ପ୍ରତିପୁସ୍ତକର ମଲାଟରେ ଗ୍ରନ୍ଥକାରଙ୍କ ନାମର ମୋହର ଦିଆଯାଇଅଛି ।

# ବର୍ଣ୍ଣବୋଧ ।

ଶ୍ରୀ ମଧୁସୂଦନ ରାଓ ପ୍ରଣୀତ ।

ଅଷ୍ଟମ ସଂସ୍କରଣ ।







PRINTED BY R. P. DAN.

AT THE ARUNODAY PRESS.

CUTTACK.

1901.


ମୂଲ୍ୟ ଦେଢ଼ଅଣା ।




ସ୍ୱରବର୍ଣ୍ଣ ।

| | | | | | |
|---|---|---|---|---|---|
| ଅ | ଆ | ଇ | ଈ | ଉ | ଊ |
| ଋ | ଌ | ଏ | ଐ | ଓ | ଔ |



ପରୀକ୍ଷା ।

| | | | | | |
|---|---|---|---|---|---|
| ଅ | ଏ | ଋ | ଇ | ଓ | ଌ |
| ଐ | ଊ | ଔ | ଆ | ଉ | ଈ |

## ବ୍ୟଞ୍ଜନବର୍ଣ୍ଣ ।

| | | | | |
|---|---|---|---|---|
| କ | ଖ | ଗ | ଘ | ଙ |
| ଚ | ଛ | ଜ | ଝ | ଞ |
| ଟ | ଠ | ଡ | ଢ | ଣ |
| ତ | ଥ | ଦ | ଧ | ନ |
| ପ | ଫ | ବ | ଭ | ମ |

| | | | |
|---|---|---|---|
| ଯ | ର | ଲ | ଵ |
| ଶ | ଷ | ସ | ହ |
| ଡ଼ | ଢ଼ | ୟ | ଳ |

| | | |
|---|---|---|
| ଂ | ଃ | ଁ |

## ପରୀକ୍ଷା ।

| | | | | |
|---|---|---|---|---|
| ଖ | ଡ | ଛ | ଚ | ପ |
| ଫ | ଥ | ଠ | ଙ | ଞ |
| ଗ | ଜ | ଟ | ଧ | ବ |
| ଭ | ଯ | ଢ | ଦ | ଘ |
| ଝ | ତ | ଣ | ନ | ମ |
| ଏ | ଶ | ର | ସ | ଡ଼ |
| ହ | ଲ | ବ | ଷ | ଢ଼ |
| ଳ | ୟ | ଂ | ଁ | ଃ |



| | | | |
|---|---|---|---|
| ଅଖ | ଈଶ | ଋଣ | ଐଷଣ |
| ଆଣ | ଉଇ | ଌଌ | ଓଠ |
| ଇନ୍ଦ୍ର | ଊନ | ଏକ | ଔଷଧ |



| | | | | |
|---|---|---|---|---|
| କର | ଜଳ | ତଠ | ଫଳ | ଲୟ |
| ଖଠ | ଝର | ଥର | ବଡ | ବଶ |
| ଗଚ୍ଛ | ଘର | ଦଶ | ଭୟ | ଶର |
| ଘଠ | ଠକ | ଧର | ମନ | ଚଷ |
| ଚକ | ଡର | ନବ | ଯଶ | ସଜ |
| ଛଣ | ଢଗ | ପଣ | ରସ | ହଳ |

| | | | |
|---|---|---|---|
| ଅଳସ | ଦଶମ | ସହଜ | ଶୟନ |
| ଆସନ | ଶକଠ | ସରଳ | ସମୟ |
| କଳସ | ରଜକ | ସଳଖ | ସରସ |
| ବସନ | ରଜତ | ସକଳ | ଔରସ |



ବରଗଛ । ଅଖଅଣ । ଚକ ରଖ । ଛଗ କନ୍ଧ ।
ଶଠ ଜନ । ପଥର ଘର । ଶୟନ କର । କଳସ ଧର ।
ଅଠବରଷବୟସ । ଦଶଗଛ ପଣସ । ଶତଦଳ ସରସ ।

## ଆକାର ବନା ।

| | | | | | |
|---|---|---|---|---|---|
| କ | ଆ | କା | ଚ | ଆ | ଚା |
| ଖ | ଆ | ଖା | ଛ | ଆ | ଛା |
| ଗ | ଆ | ଗା | ଜ | ଆ | ଜା |
| ଘ | ଆ | ଘା | ଝ | ଆ | ଝା । |

ଟା ଠା ଡା ଢା ଣା ତା ଥା ଦା
ଧା ନା ପା ଫା ବା ଭା ମା ଯା
ରା ଲା ଶା ଷା ସା ହା

| | | | | |
|---|---|---|---|---|
| କାଉ | ଗୃଷ | ଦୟା | ଦାତା | ତାରା |
| ଗାଈ | ବାସ | ମାୟା | ମାତା | ଧାରା |
| ବାଟ | ବାର | ସଭା | ନାଶ | ଭାଷା |
| ଘାଟ | ମାସ | ଶାଖା | କାଶ | ରାଜା |

| | | | | |
|---|---|---|---|---|
| ଭସନା | ସାଧନା | ପାଷାଣ | ସମାନ | ଶାସନ |
| ବାସନା | ଯାତନା | ସାହସ | ସକାଳ | କାରଣ |







| | |
|---|---|
| ମାଛ ଭାସଇ । | ଜାହାଜ ଆସଇ । |
| କଳାଛତା ଧର । | ଧାନ ଚାଷ କର । |
| ଯାଦବ ବସଇ । | ମାଧବ ହସଇ । |
| ଆକାଶର ତାରା । | ବରଷାର ଧାରା । |
| ପାହାଡ଼ର ତଳ । | ଭଲ ଝରର ଜଳ । |
| ହିମାଭାଇ ରାମ । | ଉଷାଭାଇ ଶାମ । |



## ହ୍ରସ୍ୱ ଇକାର ବନା ।

| | | | | | |
|---|---|---|---|---|---|
| କ | ଇ | କି | ଚ | ଇ | ଚି |
| ଖ | ଇ | ଖି | ଛ | ଇ | ଛି |
| ଗ | ଇ | ଗି | ଜ | ଇ | ଜି |
| ଘ | ଇ | ଘି | ଝ | ଇ | ଝି |

ଟି ଠି ଡି ଢି ଣି ତି ଥି ଦି ଧି ନି ପି

ଫି ବି ଭି ମି ଯି ରି ଲି ଶି ଷି ସି ହି ।*

---

* ଖି, ଥି, ଧି, ଯି, ବି, ଭି, ରି ପ୍ରଭୃତି ଖ, ଥ, ଧ, ଯ, ବ, ଭ, ର ଏପରି ମଧ୍ୟ ଲେଖାଯାଏ, ଶିକ୍ଷକ ମହାଶୟ ଛାତ୍ରମାନଙ୍କୁ ବୁଝାଇ ଦେବେ ।

| | | | | |
|---|---|---|---|---|
| ଦିନ | ଶିବ | ଗତି | ମତି | ମଣି |
| ଘିଅ | ବିଷ | ଦଧି | ହାତୀ | ଖଣି |
| ହିମ | ରବି | ଗିରି | ତିଥି | ହରି |
| ପାଣି | ଛବି | ନଦୀ | ପତି | ତରି |
| ଦିବା | ନିଶା | ଋଷି | ତିଳ | ଲିପି |
| ଶିଶିର | ଦିବସ | ହରିଣ | ମଳିନ | ବିଷମ |
| ଅଶନି | କିରଣ | ବାଳିକା | ମହିଷ | କଠିନ |
| ବିଦୁର | ଅତିଥି | ନିକଟ | ମହିମା | ବଧିର |



ହରିଣ ନ ଦିଏ ଧରା ।
ଦଉଡ଼ ନା ବଡ଼ ଖରା ।
ଛବି ବହି କିଣି ଆଣ ।
ଭଲପାଣି କର ପାନ ।
ହରି ଖାଇବାର ନିଅ ।
ଭାତ ଡାଲି ଦହି ଘିଅ ।

ଭାଇ ଶିବ ନାରାୟଣ ।
ପଢ଼ ଆଜି ରାମାୟଣ ।
ରାମର ସିତାର ଧର ।
ବଜାଅ ବଜାଅ ହରି ।
ରାତି ପାହିଲାଣି ରାବଇ କାଉ ।
ଉଠ ଉଠ ମଠ ନ କର ଆଉ ।

## ଦୀର୍ଘ ଈକାର ବନା ।

| | | | | | |
|---|---|---|---|---|---|
| କ | ଈ | କୀ | ଚ | ଈ | ଚୀ |
| ଖ | ଈ | ଖୀ | ଛ | ଈ | ଛୀ |
| ଗ | ଈ | ଗୀ | ଜ | ଈ | ଜୀ |
| ଘ | ଈ | ଘୀ | ଝ | ଈ | ଝୀ |

ଟୀ ଠୀ ଡୀ ଢୀ ଣୀ ତୀ ଥୀ ଦୀ ଧୀ ନୀ ପୀ
ଫୀ ବୀ ଭୀ ମୀ ଯୀ ରୀ ଲୀ ଶୀ ଷୀ ସୀ ହୀ ।



| | | | | |
|---|---|---|---|---|
| କୀଟ | ନୀଳ | ଦୀନ | ଋଣୀ | ନଦୀ |
| ଚୀତ | ନୀର | ହୀନ | ରୀତ | ଶଶୀ |
| ଧୀର | ପୀତ | ଶୀତ | ଦାସୀ | ସୀତା |
| ତୀର | ବୀର | ମୀନ | ନୀତ | ସତୀ |
| ଦୀପ | ନାରୀ | ପୀଡ଼ା | ବୀଣା | ଧନୀ |
| ବୀଜ | ଲୀଳା | ଫଣୀ | ବାଣୀ | ମୀନ |

| | | | | |
|---|---|---|---|---|
| ଶରୀର | ଧୀବର | ଶୀତଳ | ଜନନୀ | ରଜନୀ |
| ସମୀର | ନବୀନ | ଗମ୍ଭୀର | ଭଗିନୀ | ଧରଣୀ |
| ଯାମିନୀ | ଅଧୀନ | ଜୀବନ | ରମଣୀ | ତରଣୀ |



ପାଇକ ସାଜିଲା, କାହାଳୀ ବାଜିଲା, ହାତୀ ଅଇଲା ଚାଲି ।
ଆସ ଆସ ଭାଇ, ଗୀତ ଗାଇ ଗାଇ, ଯିବା ନଦୀର ବାଲି ।

---

ହ୍ରସ୍ୱ ଉକାର ଫଳା ।

| | | | | | |
|---|---|---|---|---|---|
| କ | ଉ | କୁ | ଚ | ଉ | ଚୁ |
| ଖ | ଉ | ଖୁ | ଛ | ଉ | ଛୁ |
| ଗ | ଉ | ଗୁ | ଜ | ଉ | ଜୁ |
| ଘ | ଉ | ଘୁ | ଝ | ଉ | ଝୁ |

ଟୁ ଠୁ ଡୁ ଢୁ ଣୁ ତୁ ଥୁ ଦୁ ଧୁ ନୁ ପୁ ଫୁ ବୁ ଭୁ ମୁ ଯୁ ରୁ ଲୁ ଶୁ ଷୁ ସୁ ହୁ ।

---

| | | | | |
|---|---|---|---|---|
| କୁଳ | ଲଘୁ | ଆୟୁ | ଚାରୁ | ସୁଧା |
| ସୁଖ | ଗୁରୁ | ବାୟୁ | ଭୀରୁ | ବଧୁ |
| ପୁର | ସରୁ | ପଶୁ | ଚାଟୁ | ତନୁ |
| ମୁଖ | ସାଧୁ | ଶିଶୁ | ଚାଢୁ | ତୁଷ |
| ଶୁଭ | ମଧୁ | ରୁଢ | ରିପୁ | ସୁନା |
| ଗୁଣ | ଯଦୁ | ଶୁଢ | ବନ୍ଧୁ | ବାନ୍ଧୁ |

---

| | | | | |
|---|---|---|---|---|
| କୁକୁର | ବକୁଳ | ଯୁବକ | ସୁଶୀଳ | ମାଧୁରୀ |
| ଅସୁର | ମୁକୁଳ | ପୁରୁଷ | କୁଳୀନ | ଚାତୁରୀ |
| ଚତୁର | କୁସୁମ | କୁଶଳ | ମଧୁର | ମୁରଲୀ |



ଭାଲୁଟା ଅନାଇଛି ।
କୁକୁର ଦଉଡ଼ୁ ଅଛି ।
ବିଲୁଆ ବଡ଼ ଚତୁର ।
ପଇଡ଼ ବଡ଼ ମଧୁର ।
ପିମ୍ପଡି ବଡ଼ ଆତୁର ।
ବଉଳଫୁଲର ବାସ ,
ଚହଟଇ ଚଉପାଶ ।
ଦୀପ ଲଗାଇ ଦିଅ ।
ଦୁଇପଲ ଗାଈ ଦିଅ ।

## ଦୀର୍ଘ ଊକାର ବନା ।

| | | | | | |
|---|---|---|---|---|---|
| କ | ଊ | କୂ | ଚ | ଊ | ଚୂ |
| ଖ | ଊ | ଖୂ | ଛ | ଊ | ଛୂ |
| ଗ | ଊ | ଗୂ | ଜ | ଊ | ଜୂ |
| ଘ | ଊ | ଘୂ | ଝ | ଊ | ଝୂ |

ଟୂ ଠୂ ଡୂ ଢୂ ଣୂ ତୂ ଥୂ ଦୂ ଧୂ ନୂ ପୂ
ଫୂ ବୂ ଭୂ ମୂ ଯୂ ରୂ ଲୂ ଶୂ ଷୂ ସୂ ହୂ ।

| | | | | |
|---|---|---|---|---|
| କୂପ | ଦୂତ | ଧୂମ | ପୂଜା | ମୂଳ |
| ଧୂପ | ଭୂତ | ଭୂମି | ଚୂଡ଼ା | ଶୂଳ |
| ରୂପ | ଗୂଢ଼ | ମୂକ | ଯୂଥ | ଶୂର |
| ଭୂପ | ମୂଢ଼ | ଧୂଳି | ଯୂଷ | ଦୂର |

| | | | | |
|---|---|---|---|---|
| ଶୂକର | ଅକୂଳ | ନୂପୁର | ମୂଷିକ | ନୂତନ |
| ଭୂତଳ | ଦୁକୂଳ | ଭୂଷଣ | ସମୂହ | ମୟୂର |

ଆଇଲାଣି ବିଲାଇ ।

ମୂଷା ଯିବ ପଳାଇ ।



ମୟୂର ନାଚଇ । ସପୂର ପାଚଇ । କୂପଜଳ ସୁଶୀତଳ ।
ଦୂରବାଟ । ନୂଆଦାଣ୍ଡ । ନଦୀକୂଳ । ତରୁମୂଳ ।
ନୂତନ ବାଳକ ବାଳିକା । କୁମୁଦ କୁସୁମ ମାଳିକା ।
ସୁନା ରୂପା ଅଛି ଯାର । ବହୁତ ଭାବନା ତାର ।



ଋକାର ବନା ।

| | | | | | |
|---|---|---|---|---|---|
| କ | ଋ | କୃ | ଚ | ଋ | ଚୃ |
| ଖ | ଋ | ଖୃ | ଛ | ଋ | ଛୃ |
| ଗ | ଋ | ଗୃ | ଜ | ଋ | ଜୃ |
| ଘ | ଋ | ଘୃ | ଝ | ଋ | ଝୃ |

ଟୃ ଠୃ ଡୃ ଢୃ ତୃ ଥୃ ଦୃ ଧୃ ନୃ ପୃ ଫୃ
ବୃ ଭୃ ମୃ ଯୃ ଶୃ ଷୃ ସୃ ହୃ ।

| | | | | |
|---|---|---|---|---|
| କୃଶ | ମୃଗ | ଗୃଧ୍ର | ତୃଷା | କୃଷି |
| ବୃଷ | ତୃଣ | ଘୃତ | ବୃଥା | କୃମି |
| ନୃପତି | ପୃଥିବୀ | ମୃଣାଳ | କୃଷକ | ଶୃଗାଳ |
| ଈଦୃଶ | କୀଦୃଶ | ସଦୃଶ | ଯାଦୃଶ | ତାଦୃଶ |

ଧଳାବୃଷ ବୁଲୁଅଛି । କଳାମୃଗ ଜଳ ପିଉଅଛି । କୃଷକ ଘରଣୀ ଗୃହ ଲିପୁଅଛି । ଗାଈକୁ ତୃଣ ଦିଅ ।



କୃଷିକାର୍ଯ୍ୟ ହିତକାର୍ଯ୍ୟ ଅଟେ ପୃଥିବୀର ।
କୃଷିକର ପାଳୁଅଛି ମାନବ ଶରୀର ।

---

ଏକାର ବନା ।

| | | | | | |
|---|---|---|---|---|---|
| କ | ଏ | କେ | ଚ | ଏ | ଚେ |
| ଖ | ଏ | ଖେ | ଛ | ଏ | ଛେ |
| ଗ | ଏ | ଗେ | ଜ | ଏ | ଜେ |
| ଘ | ଏ | ଘେ | ଝ | ଏ | ଝେ |

ଟେ ଠେ ଡେ ଢେ ଣେ ତେ ଥେ ଦେ ଧେ ନେ ପେ ଫେ ବେ ଭେ ମେ ଯେ ରେ ଲେ ଶେ ଷେ ସେ ହେ ।

---

| | | | | |
|---|---|---|---|---|
| କେଶ | ମେଷ | ଲେଶ | ରେଣୁ | ସେବା |
| ବେଶ | ଶେଷ | ଦେଶ | ବେଣୁ | ସେନା |
| ମେଘ | ରେଖା | ବେଣୀ | ସେତୁ | ଧେନୁ |
| ତେଜ | ଲେଖା | ଶେଣୀ | ହେତୁ | ମେରୁ |
| ଆଦେଶ | ସ୍ୱଦେଶ | କେଶବ | କେଶର | ଗଣେଶ |
| ଅଶେଷ | ସ୍ୱଶେଷ | ସେବକ | ନଷେଧ | ସୁରେଶ |





ଛେଳକୁଆଟିକ ଦେଖ । ମେଷକୁଆଟିକ ରଖ । ଗାଡ଼ିରେ ଲଗାଅ ଅଖ । ପାକଲବେଲକୁ ଚୃଖ । ନଡ଼ିଆତେଲ ଲଗାଅ । କେଶବର ଲୁଗା ମଗାଅ । ଲେଖାପଢ଼ାରେ ଦଅ ମନ । ହେଳା ନ କର ଶିଶୁଗଣ । ଖେଳା କର ହେ ପଢ଼ା ସାର । ଦେଖିବ ଆସ ଶୁଆ ସାରୀ ।

ଐକାର ବନା ।

| | | | | | |
|---|---|---|---|---|---|
| କ | ଐ | କୈ | ଚ | ଐ | ଚୈ |
| ଖ | ଐ | ଖୈ | ଛ | ଐ | ଛୈ |
| ଗ | ଐ | ଗୈ | ଜ | ଐ | ଜୈ |
| ଘ | ଐ | ଘୈ | ଝ | ଐ | ଝୈ |

ଟୈ ଠୈ ଡୈ ଢୈ ଣୈ ତୈ ଥୈ ଦୈ ଧୈ ନୈ ପୈ ଫୈ
ବୈ ଭୈ ମୈ ଯୈ ରୈ ଲୈ ଶୈ ଷୈ ସୈ ହୈ ।

| | | | |
|---|---|---|---|
| ତୈଳ | ଦୈବ | ହୈମ | ବୈଧ |
| ଶୈଳ | ଶୈବ | ନୈଶ | ବୈର |
| ଶୈଶବ | ସୈକତ | ବୈଶାଖ | ଶୈବାଳ |
| କୈଳାସ | ସୈନିକ | ଭୈରବ | କୈରବ |

ମଥାରେ ତୈଳ ଲଗାଅ । ଛେଳ ଶୈଳ ଉପରେ ଚରୁଅଛି । କୈଳାସର ଶୈଶବକାଳରେ ତାହାର ପିତା ମରଗଲେ । ଭୈରବ ଛତା ଧରଅଛି । ବୈଶାଖ ମାସେ ବଡ଼ ଖରା । ଅତ ତପତ ହୁଏ ଧରା ।



ଓକାର ବନା ।

| | | | | | |
|---|---|---|---|---|---|
| କ | ଓ | କୋ | ଚ | ଓ | ଚୋ |
| ଖ | ଓ | ଖୋ | ଛ | ଓ | ଛୋ |
| ଗ | ଓ | ଗୋ | ଜ | ଓ | ଜୋ |
| ଘ | ଓ | ଘୋ | ଝ | ଓ | ଝୋ |

ଝୋ ଠୋ ଡୋ ଢୋ ଣୋ ତୋ ଥୋ ଦୋ ଧୋ ନୋ ପୋ
ଫୋ ବୋ ଭୋ ମୋ ଯୋ ରୋ ଲୋ ବୋ ଶୋ ଷୋ ହୋ ।

| | | | | |
|---|---|---|---|---|
| ଲୋକ | ରୋଗ | ଦୋଷ | ଯୋଗ | ସୋମ |
| ଶୋକ | ଭୋଗ | ରୋଷ | ଘୋର | ହୋମ |
| ଲୋଚନ | କପୋତ | ଗୋକୁଳ | ଯୋଜକ | ଭୋଜନ |
| ମୋଚନ | କପୋଳ | ଗୋଧୂମ | ମୋଦକ | ରୋଦନ |



ଘୋଡ଼ା ଦେଖ । ଭୋଜନ କର । ରୋଦନ କର । ଢୋଲ୍ ବାଜଇ । ସୋମ ମା କୋଳରେ ବସି ଝୁଲୁଅଛି । ରୋଷ ଛାଡ଼ । ମନକୁ ତୋଷ କର । ଗୋଲ୍ପଫୁଲ୍ ନଅ । ଗୋପାଳ ସୁବୋଧ ବାଳକ ଅଟେ । ଗୋରୁ ଖାଉଅଛି କୋମଳ ଘାସ । ଗୋପୀଜେନା ଚୃଷୀ କରୁଛି ଚୃଷ ।

ମଧୁର ବିନମ୍ର ବଚନ । କହି ତୋଷିବ ଜନମନ ।

## ଔକାର ବନା ।

| | | | | | |
|---|---|---|---|---|---|
| କ | ଔ | କୌ | ଗ | ଔ | ଗୌ |
| ଖ | ଔ | ଖୌ | ଘ | ଔ | ଘୌ |

ଚୌ ଛୌ ଜୌ ଝୌ ଞୌ ଟୌ ଡୌ ଢୌ ଣୌ ତୌ ଥୌ
ଦୌ ଧୌ ନୌ ପୌ ଫୌ ବୌ ଭୌ ମୌ ଯୌ ରୌ ଲୌ
ଶୌ ଷୌ ସୌ ହୌ ।

---

| | | | | |
|---|---|---|---|---|
| ପୌଷ | ସୌଧ | ଗୌର | ସୌଖ | ଲୌହ |
| ଶୌଚ | ଧୌତ | ଷୌର | ଗୌରୀ | ନୌକା |
| ଗୌରବ | କୌତୁକ | ଯୌବନ | କୌଶଲ | କୌରବ |
| ସୌରଭ | ଯୌତୁକ | ପୌରୁଷ | କୌପୀନ | ପୌରବ |

ଢୌଲ କର । ନୌକା ଧର । ଲୌହ ଗୋଟିଏ ଧାତୁ । ସେଥିରୁ ଛୁରୀ, କଟୁରି, ଦାଆ, କୋଡ଼ ଆଦି ହୋଇଅଛି । ନଅ ଗୌଣୀ ଧାନରୁ ଚାରି ଗୌଣୀ ଚାଉଳ ବାହାରିଲା । ଗୌରୀ ବାପଘରୁ ବହୁତ ଯୌତୁକ ଆଣିଅଛି ।

ପୌଷମାସରେ ବଡ଼ ଶୀତ । ସକାଳ ଖରା ବଡ଼ ହିତ ।



## ବିବିଧ ପାଠ ।

| | | | | |
|---|---|---|---|---|
| ଶିକ୍ଷା | ଘୃଣା | ସୀମା | ରାଶି | କାଶୀ |
| ଶୋଭା | କୃପା | ସ୍ନାନ | ଯୂଥ | ସୁଖୀ |

| | | | | |
|---|---|---|---|---|
| କୋକିଳ | ଷୋଡ଼ଶ | ମୋହିନୀ | ଏକାକୀ | ପିପାସା |
| ଅକୃତ | ସୋପାନ | ଦୟାଳୁ | ମେଧାବୀ | ନିଷେଧ |

| | | | |
|---|---|---|---|
| ବର ଗଛ | ମହୁ ମାଛି | ଧଳା ବୃଷ | ଆଷାଢ଼ ମାସ |
| ଧଳା ଗାଈ | ଯୂଈ ଫୁଲ | କଳା ମେଘ | କୈଳାସ ଗିରି |
| ହରିଣ ପଲ | ନଦୀ କୂଳ | ମିଠା ବେଲ | କାଳ କୋଇଲି |
| ବୁଢ଼ା ହାତୀ | ଗଛ ମୂଳ | ସୋରିଷ ତେଲ | ବଡ଼ କୌତୁକ |



ସକାଳ ହେଲାଣି । ଉଠ, ମୁଖ ଧୁଅ । ଶୀତଳ ପବନ ବହୁଅଛି । ବାହାରେ ଟିକିଏ ବୁଲି ଆସ । ବଗିଚାରେ କେତେ ଫୁଲ ଫୁଟିଅଛି ।

ଆହା ଫୁଲ ଉପର ବାସୁଅଛି । କାଉ ବୋବାଉଅଛି । ଘରଚଟିଆ ଏଠାରୁ ଉଡ଼ି ସେଠାରେ ବସୁଅଛି । କଜଳପାତି ଗଛ ଉପରେ ବସି ଗାଉଅଛି । କୋଇଲି କୁ କୁ ଡାକୁଅଛି । ଆସ, ପୋଥି ଘେନି

ପାଠଶାଳାକୁ ଯିବା । ସେଠାରେ ମନ ଦେଇ ପାଠ ପଢ଼ିବା । ଗୁରୁ ଯାହା କହିବେ, ତାହା ମନ ଦେଇ ଶୁଣିବା ।

---

ବେଳ ବୁଡ଼ିଲାଣି । ଗୁରୁ ମେଲାଣି ଦେଲେଣି । ଚାଲ ଘରକୁ ଯିବା । ଘରେ ପୋଥି ଥୋଇଦେଇ ମା ଯାହା ଖାଇବାକୁ ଦେବେ ତାହା ଖାଇବା । ଖାଇସାରି ଲୁଚକାଳି ଖେଳିବା । ଖେଳି ସାରିଲେ ବାପା ଯାହା କହିବେ ତାହା କରିବା । ଦିନବେଳେ ଯାହା ପଢିଥିବା, ରାତିରେ ତାହାକୁ ଆଉ ଥରେ ପଢିବା । ପଢ଼ିସାରି ଭାତ ଖାଇ ଶୋଇବା । ରେବତୀର ଘରେ ଢୋଲ ବାଜୁଅଛି । ଗୌରୀ ପୋଥି ପଢ଼ୁଅଛି ।



ଗାଈ ବାଛୁରୀ ଅସ ଆସ, ଖାଇବ ପରା ଦୁବ ଘାସ ।
ମୋହ ପାଖରେ ଦୁଅ ଛିଡ଼ା, ଖାଇବ ଯେବେ ଘାସବିଡ଼ା ।

---



ଅରେ ମୋର ପୁଷି,
ଖାରେ ଯେତେ ଖୁସି ।
ଦୁଧଭାତ ମିଠା,
ଖାଇବୁ ଘିପିଠା ।
ମୋ ପାଖରେ ବସି,
ଖା ରେ ମୋର ପୁଷି ।

---

ଅନୁସ୍ୱାର ଯୋଗ ।

| | | | |
|---|---|---|---|
| ଅ | ଅଂ | ଗ | ଗଂ |
| କ | କଂ | ମା | ମାଂ |
| ଖ | ଖଂ | ସି | ସିଂ |

| | | | | |
|---|---|---|---|---|
| ଅଂଶ | ହଂସ | ସିଂହ | ହିଂସା | ବଂଶୀ |
| ବଂଶ | କଂସ | ମାଂସ | ଅଂଶୁ | ଅଂଶୀ |

| | | | |
|---|---|---|---|
| ବଂଶଜ | ସଂସାର | ସଂଶୟ | ମୀମାଂସା |
| କଂଶୁକ | ସଂଯୋଗ | ସଂବାଦ | ଦଂଶନ |

ସିଂହ ପଶୁରାଜ ଅଟେ ।
ହଂସ ଜଳରେ ସଞ୍ଚରଣ କରେ ।
ଜୀବହିଂସା ନ କର ।
ବଂଶୀ ବାଜୁଛି ନଦୀତୀରେ ।
ହଂସ ଖେଳୁଛି ନଦୀନୀରେ ।
ସିଂହ ବୁଲଇ ଘୋରବନେ ।
ସଂହାରେ ବନ୍ୟ ଜୀବଗଣେ ।



---

## ବିସର୍ଗ ଯୋଗ ।

| | | | | | |
|---|---|---|---|---|---|
| କ | ଃ | କଃ | ଘ | ଃ | ଘଃ |
| ଖ | ଃ | ଖଃ | ଦୁ | ଃ | ଦୁଃ |
| ଗ | ଃ | ଗଃ | ନି | ଃ | ନିଃ |

| | | | |
|---|---|---|---|
| ଦୁଃଖ | ଦୁଃଖିତ | ଦୁଃସମୟ | ନିଃସଂଶୟ |
| ଦୁଃଖୀ | ନିଃଶେଷ | ଦୁଃସାହସ | ନିଃସହାୟ |

ସୁଖ ପରେ ଦୁଃଖ, ଦୁଃଖ ପରେ ସୁଖ, ଲାଗିଛି ସଦା ସଂସାରେ ।

---

## ଚନ୍ଦ୍ରବିନ୍ଦୁ ଯୋଗ ।

| | | | | | |
|---|---|---|---|---|---|
| ଉ | ଁ | ଉଁ | ଗା | ଁ | ଗାଁ |
| କ | ଁ | କଁ | ବା | ଁ | ବାଁ |
| ଖ | ଁ | ଖଁ | ହା | ଁ | ହାଁ |

| | | | |
|---|---|---|---|
| ପାଉଁଶ | ଚଅଁର | କାହିଁ | କଅଁଳ |
| ଭଉଁରୀ | ଚଉଁରୀ | ନାହିଁ | ଯାଅଁଳା |

ଅଁଳାଫଳ କଷା ଲାଗେ । ପାଉଁଶ ତଳେ ନିଆଁ ଅଛି ।

ଲବ କୁଶ ଦୁହେଁ ଯାଅଁଳା ଭାଇ
ସାନ ବଡ଼ ବାରି ହୁଅଇ ନାହିଁ ।
ଚକା ଚକା ଭଉଁରୀ । ମାମୁଘର ଚଉଁରୀ ।

---

## ହଳନ୍ତ । ( ୍ )

କ୍ ଖ୍ ଗ୍ ଘ୍ ଚ୍ ଛ୍ ଜ୍ ଇତ୍ୟାଦି ।

| | | | | |
|---|---|---|---|---|
| ସତ୍ | ଅସତ୍ | ଜଗତ୍ | ହଠାତ୍ | ଝକ୍‌ଝକ୍ |
| ଛତ୍ | ଛପତ୍ | ଶରତ୍ | ଅଚିରାତ୍ | ଧକ୍‌ଧକ୍ |

ଝୁଲରେ ହାତୀ ଝୁଲ୍
ବା ପାଣି ଖାଇ ଝୁଲ୍
ବା ପାଣି ଖାଇ ଫୁଲ୍



---

## ବିବିଧ ପାଠ ।

| | | | |
|---|---|---|---|
| ଅତିଶୟ | ପରିହାସ | ରସାୟନ | ଉପବାସ |
| ସହୃଦୟ | ଅଭିଳାଷ | ରସାତଳ | ଅବକାଶ |
| ବିନିମୟ | ରମଣୀୟ | ଉପବୀତ | ଚମତ୍କାର |
| ଅନୁନୟ | ମାନନୀୟ | ଉପନୀତ | ଫୁତ୍କାର |
| କୌତୂହଳ | ସମୂଳକ | ସଂଶୋଧନ | ନିରୂପଣ |
| କାଳକୂଟ | ଅନୁକୂଳ | ପରିଶୋଧ | ଅପରୂପ |
| ଦୈବବଳ | ମନୋଯୋଗ | ପୁରୋହିତ | ସହୋଦର |
| ସମୁଦାୟ | ବିପରୀତ | ବିବେଚନା | ପୁଲକିତ |
| ହୁତାଶନ | ଶୁଭବେଳା | ସାଂସାରିକ | ଅନୁରୋଧ |
| ନିରୁପାୟ | ଅବହେଳା | ପୁନଃପୁନଃ | ପରିତୋଷ |



ମୋର ଦୁଇ ଆଖି, ଦୁଇ କାନ, ଦୁଇ ହାତ, ଦୁଇ ଗୋଡ଼ । ଆଖି ନ ଥିଲେ କିଛି ଦିଶେ ନାହିଁ । କାନ ନ ଥିଲେ କିଛି ଶୁଭେ ନାହିଁ । ହାତ ନ ଥିଲେ କିଛି କାମ କରି ହୁଏ ନାହିଁ । ଗୋଡ଼ ନ ଥିଲେ ଚାଲି ହୁଏ ନାହିଁ । ମୁଁ ଜିଭରେ କଥା କହେଁ ଓ ଯାହା ଖାଏଁ ତାହା ମିଠା, କି ଖଟା, କି ପିତା, କି କଷା ଜାଣିପାରେଁ ।

---

ମୁଁ ଡାହାଣ ହାତରେ ପୋଥି ଧରିଅଛି । ବାଁ ହାତରେ ଛତା ଧରିଛି ମୋ ମଥାରେ କଳା କେଶ । ଆଈ ମଥାରେ ଧଳା କେଶ । ମୋ ନାକର ଦୁଇଟା ପୁଡ଼ା । ନାକପୁଡ଼ାବାଟେ ପବନ ଯା ଆସ କରୁଛି । ମୋ ପିଠିରେ ଗୋଟାଏ ଘା ହୋଇଥିଲା, ଶୁଖି ଗଲାଣି । ପିଠିର ମେରୁହାଡ଼ଟା କେଡ଼େ ବଡ଼ ।

---

ମୁଁ ବଡ଼ ଦୁଃଖୀ । ମୋର ଘର ନାହିଁ । ମୋ ଆଖିକୁ ଦିଶେ ନାହିଁ । ମୁଁ ଭିଖ ମାଗି ବୁଲୁଅଛି । ମୋର ଖାଇବାକୁ ନାହିଁ । ମୋର ଲୁଗା ନାହିଁ, ଶୀତରେ ଦେହ ଥରୁଅଛି । ମୋତେ ମୁଠିଏ ଖାଇବାକୁ ଦିଅ, ଗୋଟାଏ ପୁରୁଣା ଲୁଗା ଦିଅ । ମୋତେ ଦୟା କର ।

---

ଟୁଙ୍କୁ ମୂଷି ଟୁଙ୍କେଇ ମୂଷି;
ଧାନ ଭରଣକ ଖାଉଥା ବସି ।
ତୁ ଥା ମୁଁ ଯାଉଛି ରୁଷି ।



---



ଅରେ କାଉ ଅ, ଅ, ଅ,
କାହିଁକି ରଡୁଛୁ କା, କା, କା,
ଚୂଡ଼ଲ ଦଉଚ ଖା, ଖା, ଖା,
କାହୁଁ ଅଇଲୁ କହ ଉଡ଼ି ଯା ।



ଭୁ, ଭୁ, ଭୁ, ଡାକିଲି ମୁହିଁ ।
ଦଉଡ଼ି ଆସିଲୁ କୁକୁର ତୁହି ।
ଆଉଁସି ଦେବିରେ ଦେହ ତୋହର,
ଖାଇବାକୁ ଦେବି ଭାତ ମୋହର ।
ମୋ କଥା ମାନିବୁ ଜାଣିଲି ମୁହିଁ,
ଯେଣେ ଯିବି ମୁହିଁ, ଯିବୁରେ ତୁହି ।

---

ସରୋବରରେ କଇଁଫୁଲ ଫୁଟିଅଛି । ବାସୁଦେବ, ଆସ ଫୁଲ ତୋଳିବା । ଫୁଲ ନେଇ ଘରେ ଭାଇ ଭଉଣୀଙ୍କି ଦେବା । ପୋଖରୀ କୂଳରେ ହରିଣଟିଏ ଛିଡ଼ା ହୋଇଅଛି । ଦେଖ ପଳାଇ ଯାଉଛି । ତା ପଛେ ଦୌଡ଼ ଦୌଡ଼ ତାହାକୁ ଧରିବା । ଓଃ ଦୌଡ଼ ଦୌଡ଼ ଗୋଡ଼ ଲହିଗଲାଣି । ତାକୁ ଧରି ପାରିବା ନାହିଁ । ଚାଲ ପୋଖରୀରେ ଗାଧୋଇ, ଫୁଲ ନେଇ, ଘରକୁ ଯିବା । ଖରା ମାଡ଼ି ଆସିଲାଣି, ଆଉ ମଠ ନ କର ।

---

ଆଜି କଳା ବଉଦ ଆକାଶରେ ଘୋଟି ଗଲାଣି । ଉଃ ବିଜୁଳି ମାରୁଅଛି । ଘଡଘଡ଼ି ରଡ଼ିରେ କାନ ଅତଡ଼ା ପଡ଼ି ଯାଉଅଛି । ଆଜି ଭାରି ବରଷା ହେବ । ହେଇ, ବରଷା ପାଣିଟ ପଡ଼ିଲାଣି । ଚାଲ ଘର ଭିତରକୁ ଯିବା, ନୋହିଲେ ଦେହ ଓ ଲୁଗା ଓଦା ହୋଇଯିବ ।

---



ଜାଇ ଯୂଈ ମଲ୍ଲି ମାଧବୀ ମାଳତୀ
ଗୋଲାପ ନଆଳୀ କେତକୀ ସେବତୀ ।
ନାନାଜାତି ଫୁଲ ଦେବି ତୋତେ ଆଣି,
ଦେଖି ତୁ ହସିବୁ ଅରେ ଧନମଣି ।

## ସଂଯୁକ୍ତ ବର୍ଣ୍ଣ ।

### ଯ ଫଳା । ( ଯ—୍ୟ )

କ ଯ କ୍ୟ । ଖ ଯ ଖ୍ୟ

ଗ୍ୟ ଘ୍ୟ ଚ୍ୟ ଛ୍ୟ ଜ୍ୟ ଝ୍ୟ ଟ୍ୟ ଠ୍ୟ ଡ୍ୟ ଢ୍ୟ ଣ୍ୟ ତ୍ୟ ଥ୍ୟ ଦ୍ୟ
ଧ୍ୟ ନ୍ୟ ପ୍ୟ ଫ୍ୟ ବ୍ୟ ଭ୍ୟ ମ୍ୟ ଯ୍ୟ ଲ୍ୟ ଶ୍ୟ ଷ୍ୟ ସ୍ୟ ହ୍ୟ ।

| | | | | |
|---|---|---|---|---|
| ଐକ୍ୟ | ଜାଡ୍ୟ | ବୈଦ୍ୟ | ସଭ୍ୟ | ମୁଖ୍ୟ |
| ଆଢ୍ୟ | ବିଦ୍ୟା | ଶଯ୍ୟା | ଖ୍ୟାତି | ନିତ୍ୟ |
| ସାଧ୍ୟ | ମୂଲ୍ୟ | ଯୋଗ୍ୟ | ସତ୍ୟ | ଶୂନ୍ୟ |
| ଭୁଜ୍ୟ | ରାଜ୍ୟ | ଉତ୍ୟ | ବ୍ୟାଧି | ଶ୍ୟାମ |
| ମୃତ୍ୟୁ | ନ୍ୟାଯ୍ୟ | ଶିଷ୍ୟ | ସହ୍ୟ | ହାସ୍ୟ |
| ନସ୍ୟ | ଦ୍ରବ୍ୟ | ବାହ୍ୟ | ବୈଶ୍ୟ | ପୋଷ୍ୟ |
| ଅବଶ୍ୟ | ଆଳସ୍ୟ | ଔଦାସ୍ୟ | ମନୁଷ୍ୟ | ଅଭ୍ୟାସ |
| ସାହାଯ୍ୟ | ଅସଂଖ୍ୟ | ବୈଷମ୍ୟ | ସାମାନ୍ୟ | ସୌଭାଗ୍ୟ |
| ଜ୍ୟୋତିଷ | ବ୍ୟବସାୟ | ଅଧ୍ୟବସାୟ | ଆବଶ୍ୟକ | ବିଦ୍ୟାଳୟ |



ଜଣେ ମନୁଷ୍ୟ ଗୋଟାଏ ଚଢ଼ାଇକୁ ବନ୍ଧୁକରେ ଶୀକାର କରୁଅଛି । ତା ପାଖରେ କୁକୁର ଶୀକାର କରିବାର ଅଭ୍ୟାସ କରୁଅଛି ।

ଧନ୍ୟ ମନୁଷ୍ୟ ଏଭୁବନେ,
ଯେ ସତ୍ୟଭକ୍ତିପୂର୍ଣ୍ଣମନେ ।

କୁବାକ୍ୟ କେବେ ନ କହିବ, ଆଳସ୍ୟ କେବେ ନ କରିବ ।
ବାଲ୍ୟକାଳରେ ଦେଇ ମନ, ବିଦ୍ୟା ଶିଖିବ ଶିଷ୍ୟଗଣ ।
ମିଥ୍ୟାକୁ ପାପ ବୋଲି ଜାଣି, କହିବ ସଦା ସତ୍ୟବାଣୀ ।

---

## ର ଫଳା । ( ର—୍ର )

| | | | | | | |
|---|---|---|---|---|---|---|
| କ | ର | କ୍ର | କ୍ର | ଗ | ର | ଗ୍ର |
| ଖ | ର | ଖ୍ର | | ଘ | ର | ଘ୍ର |

ଚ୍ର ଛ୍ର ଜ୍ର ଝ୍ର ଟ୍ର ଠ୍ର ଡ୍ର ଢ୍ର ତ୍ର ଥ୍ର ଦ୍ର ଧ୍ର ପ୍ର ଫ୍ର ବ୍ର ଭ୍ର ମ୍ର ଯ୍ର
ଶ୍ର ଷ୍ର ସ୍ର ହ୍ର

| | | | | | |
|---|---|---|---|---|---|
| ଚକ୍ର | ବଜ୍ର | ରୌଦ୍ର | ଭ୍ରାତା | ବକ୍ର | ଛତ୍ର |
| ନିଦ୍ରା | ଶୁଭ୍ର | ଶକ୍ର | ପ୍ରିୟ | ଗୃଧ୍ର | କ୍ରୀଡ଼ା |
| ଅଗ୍ର | ମିତ୍ର | ଶୀଘ୍ର | ବ୍ରୀଡ଼ା | ଗ୍ରାମ | ପ୍ରାଣ |
| ହ୍ରଦ | ସ୍ରାବ | ବ୍ୟାଘ୍ର | ତ୍ରାସ | ହ୍ରାସ | ସ୍ରୋତ |
| ଶ୍ରୁତି | ଦ୍ରୁମ | ମିଶ୍ର | ଶ୍ରେୟ | ପ୍ରୀତି | ମୁଦ୍ରା |
| ଶ୍ରମ | ହ୍ରେଷା | ନକ୍ର | ଭ୍ରମ | ତାମ୍ର | ବ୍ରଣ |

| | | | | |
|---|---|---|---|---|
| ଗ୍ରହଣ | ସମ୍ରାଟ | ଶ୍ରୀମାନ୍ | ସମୁଦ୍ର | ପ୍ରେରଣ |
| ଭ୍ରୂକୁଟି | ଶ୍ରବଣ | ସାମ୍ରାଜ୍ୟ | ଅଜସ୍ର | ପ୍ରବେଶ |
| ଆଶ୍ରମ | ଅନିଦ୍ରା | ସହସ୍ର | ପ୍ରକାଶ | ବିଶ୍ରାମ |
| ଦରିଦ୍ରା | ପ୍ରଶଂସା | କୃତ୍ରିମ | ଶ୍ରାବଣ | ପବିତ୍ର |

ଦେଖ ଗୋଟାଏ ବ୍ୟାଘ୍ର ବନ ଭିତରୁ ଆସୁଅଛି ।
ବ୍ୟାଘ୍ର ବଡ଼ ଭୟାନକ ଓ ହିଂସ୍ର ପଶୁ ଅଟେ ।



ପରିଶ୍ରମ କର ପ୍ରତି ଦିବସ, କଦାଚ ନ ହୁଅ ଆଳସ୍ୟବଶ ।



ସହସ୍ର ସହସ୍ର ଗ୍ରାମ ନଦୀର କୂଳରେ,
ନଦୀସ୍ରୋତ ମିଶେ ଯାଇ ସମୁଦ୍ରଜଳରେ ।
ପ୍ରଜାପତିଟି ହରଷରେ, ଉଡୁଛି ଦେଖ ଆକାଶରେ ।

---

## ଲ ଫଳା । ( ଲ— ୍ଲ )

| | | | | | |
|---|---|---|---|---|---|
| କ | ଲ | କ୍ଲ | ଗ | ଲ | ଗ୍ଲ |
| ଖ | ଲ | ଖ୍ଲ | ଘ | ଲ | ଘ୍ଲ |

ପ୍ଲ ଫ୍ଲ ବ୍ଲ ମ୍ଲ ଶ୍ଲ ଷ୍ଲ ସ୍ଲ ଲ୍ଲ ହ୍ଲ

| | | | | |
|---|---|---|---|---|
| କ୍ଲେଶ | ଅମ୍ଲ | କ୍ଲୀବ | ପଲ୍ଲବ | ଶୁକ୍ଲ |
| ମ୍ଲାନ | ଶ୍ଲୋକ | ବଲ୍ଲଭ | ଗ୍ଲାନି | ଶ୍ଲେଷ |
| କ୍ଲେଦ | କଲ୍ଲୋଳ | ପ୍ଲୀହା | ଶ୍ଲାଘା | ଶ୍ଲାଘ୍ୟ |
| ଉଲ୍ଲାସ | ପ୍ରହ୍ଲାଦ | ପ୍ଲାବନ | ଅଶ୍ଲୀଳ | ସଶ୍ଲେଷ |
| ଆହ୍ଲାଦ | ଭଲ୍ଲୂକ | ଅକ୍ଲେଶ | ବିଶ୍ଲେଷ | ଅଶ୍ଲେଷ |



ବ୍ୟାଘ୍ରପରି ଭଲ୍ଲୂକ ମଧ୍ୟ ହିଂସ୍ର ଅଟେ । ଭଲ୍ଲୂକ ଅରଣ୍ୟରେ ଥାଏ । ଭିଖୁଣୀ ଗୋଟାଏ ଭଲ୍ଲୂକକୁ କପଟରୁ ଧରି ଆଣି ନଚାଉଅଛି ।

କାହାରିକୁ କ୍ଲେଶ ନ ଦିଅ କେବେ,
ସଂସାରେ ପ୍ରଶଂସା ଲଭିବ ତେବେ ।
ପ୍ରହ୍ଲାଦ ଆହ୍ଲାଦେ ଗାଉଛି ଗୀତ,
ମୁଁ ଗାଇବି ମିଶି ତାହା ସହିତ ।

— ୦୦୦ —

## ବ ଫଳା । ( ବ—୍ବ )

| | | | | | |
|---|---|---|---|---|---|
| କ | ବ | କ୍ବ | ଗ | ବ | ଗ୍ବ |
| ଖ | ବ | ଖ୍ବ | ଘ | ବ | ଘ୍ବ |

ଚ୍ବ ଛ୍ବ ଜ୍ବ ତ୍ବ ଥ୍ବ ଦ୍ବ ଧ୍ବ ନ୍ବ ପ୍ବ ଫ୍ବ ଭ୍ବ ମ୍ବ ଲ୍ବ ଶ୍ବ ଷ୍ବ ସ୍ବ ହ୍ବ ।

| | | | | |
|---|---|---|---|---|
| ଜ୍ବର | ଶ୍ବେତ | ଧ୍ବନି | ପକ୍ବ | ଖଟ୍ବା |
| ଜ୍ବାଳା | ଅଶ୍ବ | ଧ୍ବଂସ | ବଲ୍ବ | ତ୍ବକ୍ |
| ଦ୍ବିଜ | ବିଶ୍ବ | ସାଧ୍ବୀ | ଦ୍ବୀପ | ଦ୍ବାର |
| ଜିହ୍ବା | ଦ୍ବେଷ | ସ୍ବାଦ | ତତ୍ତ୍ବ | ପୃଥ୍ବୀ |
| ସ୍ବାମୀ | ଶ୍ବାସ | ସ୍ବର | ନିଃସ୍ବ | ବିମ୍ବ |
| ସ୍ବଭାବ | ଉଦ୍ବେଗ | ଈଶ୍ବର | ନିଃଶ୍ବାସ | ସମ୍ବଳ |
| ଗହ୍ବର | ବିହ୍ବଳ | ସ୍ବଜତ୍ବ | ଆଶ୍ବିନ | ପଲ୍ବଲ |
| ଆହ୍ବାନ | ତେଜସ୍ବୀ | ତପସ୍ବୀ | ସତ୍ବର | ଅନ୍ବେଷଣ |

ଜଣେ ଲୋକ ଗୋଟିଏ ଅଶ୍ବକୁ ଧରଅଛି । ଅଶ୍ବ ଚଢ଼ିବାକୁ ଶିଖ, ରାମର ଅଶ୍ବ ଖୁବ୍ ଦୌଡ଼ି ପାରେ ।

ଦ୍ବାର ଦ୍ବାର ବୁଲି ମାଗଇ ଦୁଃଖୀ,
ଭିଖ ପାଇଲେ ସେ ହୁଅଇ ସୁଖୀ ।
ଅମ୍ବ ବଉଳଇ ଫଗୁଣମାସେ,
ଦଶ ଚହଟଇ ତାର ସୁବାସେ ।

---

## ନ ଫଳା । (ନ—୍ନ)

| | | | | | |
|---|---|---|---|---|---|
| କ | ନ | କ୍ନ | ଗ | ନ | ଗ୍ନ |
| ଖ | ନ | ଖ୍ନ | ଘ | ନ | ଘ୍ନ |

ଗ୍ନ (ତ୍ନ) ନ୍ନ ପ୍ନ ମ୍ନ ବ୍ନ ଶ୍ନ ସ୍ନ ହ୍ନ ।

| | | | | |
|---|---|---|---|---|
| ଅଗ୍ନି | ଯତ୍ନ | ସ୍ୱପ୍ନ | ସ୍ନେହ | ଅବସନ୍ନ |
| ବିଘ୍ନ | ରତ୍ନ | ପ୍ରଶ୍ନ | ସ୍ନାୟୁ | ସନ୍ନିଧାନ |
| ଲଗ୍ନ | ଛିନ୍ନ | ନିମ୍ନ | ପ୍ରସନ୍ନ | ଜଗନ୍ନାଥ |
| ମଗ୍ନ | ଭିନ୍ନ | ଚିହ୍ନ | ପନ୍ନଗ | ରତ୍ନାକର |
| ବିଗ୍ନ | ଅନ୍ନ | ସ୍ନାନ | ମଧ୍ୟାହ୍ନ | ପ୍ରାତଃସ୍ନାନ |
| ଭଗ୍ନ | ଜହ୍ନ | ବହ୍ନି | ଆହ୍ନିକ | ସନ୍ନିବେଶ |



ପ୍ରସନ୍ନର ମୁଦିରେ ବହୁମୂଲ୍ୟ ରତ୍ନ ଅଛି ।
ସେ ତାହାକୁ ଯତ୍ନ କରି ରଖିଅଛି ।

ଯତ୍ନ କଲେ ରତ୍ନ ମିଳେ ଏ ସାର ବଚନ
ମନେ ରଖିଥିବ ସଦା ଆହେ ଶିଶୁଗଣ ।
ଆରେ ଜହ୍ନମାମୁଁ ଶରଦଶଶୀ ,
ମୋ କାହ୍ନୁ ହାତରେ ପଡ଼ ରେ ଖସି ।

ମ ଫଳା । ( ମ — ୍ମ )

| | | | | | |
|---|---|---|---|---|---|
| କ | ମ | କ୍ମ | ଗ | ମ | ଗ୍ମ |
| ଖ | ମ | ଖ୍ମ | ଘ | ମ | ଘ୍ମ |

ଙ୍ମ ଟ୍ମ ଣ୍ମ ତ୍ମ (ତ୍ମ) ଦ୍ମ ଧ୍ମ ନ୍ମ ମ୍ମ ଶ୍ମ ଷ୍ମ ସ୍ମ ହ୍ମ ।

| | | | | |
|---|---|---|---|---|
| ବାଗ୍ମୀ | ଜନ୍ମ | ବ୍ରହ୍ମ | ସ୍ମରଣ | ସମ୍ମାନ |
| ସ୍ମୃତି | ଗୁଳ୍ମ | ଜିହ୍ମ | ବ୍ରାହ୍ମଣ | ସମ୍ମତ |
| ପଦ୍ମ | ଗ୍ରୀଷ୍ମ | ଭସ୍ମ | ରୁକ୍ମିଣୀ | ସମ୍ମୁଖ |
| ଛଦ୍ମ | ରଶ୍ମି | ଆତ୍ମା | ଶ୍ମଶାନ | ବଲ୍ମୀକ |
| ସଦ୍ମ | ଉଷ୍ମ | ଶ୍ମଶ୍ରୁ | ଶାଲ୍ମଳୀ | ଉନ୍ମାଦ |

| | | | | |
|---|---|---|---|---|
| ମହାତ୍ମା | ଦୁରାତ୍ମା | ପରାଙ୍ମୁଖ | ଅକସ୍ମାତ୍ | ହିରଣ୍ମୟ |
| ମୃଣ୍ମୟ | ପଦ୍ମିନୀ | ପଦ୍ମାବତୀ | ଅପସ୍ମାର | ପରମାତ୍ମା |

ଗ୍ରୀଷ୍ମକାଳରେ ଅନେକ ଫୁଲ ଫୁଟେ । ଗୋଲାପକଢ଼ି ଦେଖ୍, ଫୁଟୁ, ତୋଳେ ଗୋଟିଏ, ପଦ୍ମାକୁ ଗୋଟିଏ ଦେବ ।

ଫୁଟିଅଛି ପଦ୍ମଫୁଲ ସରୋବର ଜଳେ
ଆସ ହେ ତୋଳିବା ପଦ୍ମ ଆସ ହେ ସକଳେ ।
ବ୍ରହ୍ମ ପରମାତ୍ମା ହର ଜଗତ-ଈଶ୍ୱରେ
ସ୍ମର ନିତ୍ୟ, ସ୍ମର ନିତ୍ୟ, ସ୍ମର ହୃଦୟରେ ।

---

## ରେଫ ଯୋଗ । ( ରେଫ—ର୍ )

| | | | | | | | |
|---|---|---|---|---|---|---|---|
| କ | ର୍ | ରେଫ | ର୍କ | ଗ | ର୍ | ରେଫ | ର୍ଗ |
| ଖ | ର୍ | ରେଫ | ର୍ଖ | ଘ | ର୍ | ରେଫ | ର୍ଘ |

ର୍ଚ ର୍ଛ ର୍ଜ ର୍ଝ ର୍ଟ ର୍ଡ ର୍ଢ ର୍ଣ ର୍ତ ର୍ଥ ର୍ଦ ର୍ପ ର୍ଫ ର୍ବ ର୍ଭ ର୍ମ ର୍ଶ ର୍ଷ ର୍ସ ର୍ହ ।

| | | | | |
|---|---|---|---|---|
| ସର୍ବ | ମୂର୍ଖ | ଦୀର୍ଘ | କର୍ଣ୍ଣ | ଅର୍ଥ |
| ଗର୍ବ | ତର୍କ | ଅର୍ଘ | ବର୍ଣ୍ଣ | ବ୍ୟର୍ଥ |
| ଦର୍ପ | କର୍ମ | ବର୍ମ | ଅର୍ଦ୍ଧ | ହର୍ଷ |

| | | | | |
|---|---|---|---|---|
| ସର୍ପ | ଧର୍ମ | ଘର୍ମ | ବର୍ଦ୍ଧ | ବର୍ଷ |
| ସ୍ୱର୍ଗ | ବର୍ଷା | ଖର୍ବ | ସ୍ୱାର୍ଥ | ଦର୍ଶ |
| କର୍କଶ | ବିସର୍ଗ | ଦୁର୍ଜନ | ନିର୍ଝର | ଅନର୍ଥ |
| ଶର୍କରା | ଦୁର୍ଗନ୍ଧ | ବର୍ଜନ | ଝର୍ଝର | ସମର୍ଥ |
| ବାର୍ଷିକ | ଦୁର୍ବଳ | ନିର୍ଧନ | ଆଦର୍ଶ | ବିମର୍ଷ |
| କାର୍ପାସ | ନିର୍ବୋଧ | ନିର୍ଦ୍ଦୋଷ | ନିର୍ମାଣ | ପରାମର୍ଶ |
| କର୍ପୂର | ଦୁର୍ନାମ | ଅର୍ପିତ | ନିର୍ଭର | ଦୁର୍ଲଭ |

ଏହାକି ସର୍ପ ନୁହେ ଗୋଟିଏ ବଡ଼ ଶାଗୁଆବର୍ଣ୍ଣର ପୋକ । ସୁଦର୍ଶନ ତାହାକୁ ଗୋଟିଏ ବୋତଲରେ ରଖିବ ବୋଲି କହୁଅଛି ।



ନିର୍ଦ୍ଦୟ କର୍କଶ କଥା ମୁଖେ ନ କହିବ
ମଧୁର ବଚନ କହି ସକଳେ ତୋଷିବ ।
ପର୍ବତ ଦେହରୁ ବର୍ଷାକାଳରେ
ବହଇ ନିର୍ଝର—ଧାରା ଝର୍ଝରେ ।
ଡାମରା କାଉରେ ଡାମରା କାଉ
ପର୍ବତେ ପର୍ବତେ ବୋବାଉଥାଉ ।

---

ଦୁଇ ବ୍ୟଞ୍ଜନବର୍ଣ୍ଣର ସଂଯୋଗ ।

ଙ କ ଙ୍କ ପଙ୍କ, ଶଙ୍କା, ଅଙ୍କୁର, ସଙ୍କେତ ।

ଙ ଖ ଙ୍ଖ ଶଙ୍ଖ, ଶୃଙ୍ଖଳା ।
ଙ ଗ ଙ୍ଗ ସଙ୍ଗ, ସଙ୍ଗୀତ, ଅଙ୍ଗୁଳି ।
ଙ ଘ ଙ୍ଘ ଜଙ୍ଘା, ଲଙ୍ଘନ ।

ପଙ୍କଜ ଶଙ୍ଖ ବଜାଇଣ, ରଙ୍ଗେ ଲଙ୍ଘିଲ ଘୋରବନ ।



ଞ ଚ ଞ୍ଚ ଚଞ୍ଚଳ, କାଞ୍ଚନ, ସଞ୍ଚୟ ।
ଞ ଛ ଞ୍ଛ ବାଞ୍ଛା, ଲାଞ୍ଛନା ।
ଞ ଜ ଞ୍ଜ ଅଞ୍ଜଳି, ପଞ୍ଜିକା, ଖଞ୍ଜ, ଗଞ୍ଜନା ।
ଞ ଝ ଞ୍ଝ ଝଞ୍ଝା, ପଞ୍ଝା ।

---

ପାଞ୍ଜି ଉପରେ ଦୁଆତ ରଖ, କାଗଜ ଧରି ସଙ୍ଗୀତ ଲେଖ ।
ପଞ୍ଝାଏ ଖଞ୍ଜ ବସି ବସି, କଥା କହନ୍ତି ହସି ହସି ।
କାଞ୍ଚନେ ବାଞ୍ଛା ନାହିଁ ମୋର, ମାଗଇଁ ପ୍ରଭୁ କୃପା ତୋର ।

---

ଣ ଟ ଣ୍ଟ କଣ୍ଟକ, ଘଣ୍ଟା ।
ଣ ଠ ଣ୍ଠ କଣ୍ଠ, ଉତ୍କଣ୍ଠା, କୁଣ୍ଠିତ ।
ଣ ଡ ଣ୍ଡ କୁଣ୍ଡ, ମୁଣ୍ଡ, ଚଣ୍ଡାଳ, ପଣ୍ଡିତ, ଗଣ୍ଡୂଷ ।
ଣ ଢ଼ ଣ୍ଢ ଷଣ୍ଢ, ମେଣ୍ଢା ।



ଘଣ୍ଟି ବାଜଇ ଠନ୍ ଠନ୍ ।
ଘଣ୍ଟା ବାଜଇ ଢଂ ଢଂ ।
ମେଣ୍ଢା ମୁଣ୍ଡଟି ବଡ଼ ଟାଣ ।
ତା ମୁଣ୍ଡିଆକୁ ସାବଧାନ ।

ଗୁରୁଣ୍ଡି ଗୁରୁଣ୍ଡି ଏରୁଣ୍ଡି ଉପରେ ମାଧବ ବସିଛୁ ଯାଇ ।
ମାତାଙ୍କ ଅଡ଼କୁ ଅନାଇଁ ଅନାଇଁ ମାଟି ଦେଉଅଛୁ ଖାଇ ।

---



ନ ତ ନ୍ତ ଦନ୍ତ, ତନ୍ତ୍ରୀ, ସନ୍ତୋଷ, ଶାନ୍ତ, ଦାନ୍ତ।

ନ ଥ ନ୍ଥ କନ୍ଥା, ମନ୍ଥନ, ଶ୍ରୀମନ୍ଥ ।

ନ ଦ ନ୍ଦ ଆନନ୍ଦ, ମନ୍ଦର, ସିନ୍ଦୂର, ସନ୍ଦେହ ।

ନ ଧ ନ୍ଧ ଅନ୍ଧ, ସନ୍ଧି, ସନ୍ଧ୍ୟା, ବନ୍ଧୁ, ବନ୍ଧୁକ ।

ଧନ୍ୟ ଯେ ସଦା ବାସ କରେ, ଶାନ୍ତ ସନ୍ତୋଷ ଆନନ୍ଦରେ ।

ଦରିଦ୍ର ପିନ୍ଧେ ଛିଣ୍ଡା କନ୍ଥା, ଅନ୍ଧକୁ ନ ଦିଶଇ ପନ୍ଥା ।

ମ ପ ମ୍ପ ସମ୍ପଦ, ସମ୍ପନ୍ନ, ସମ୍ପାଦନ, କମ୍ପିତ ।

ମ ଫ ମ୍ଫ ଲମ୍ଫ, ଗୁମ୍ଫା, ବାମ୍ଫୀ ।

ମ ବ ମ୍ବ ସମ୍ବଲ, ସମ୍ବାଦ, ସମ୍ବୋଧନ, କମ୍ବୁ, ଅମ୍ବୁ ।

ମ ଭ ମ୍ଭ ରମ୍ଭା, ଗମ୍ଭୀର, ସମ୍ଭୋଗ, କୁମ୍ଭୀର ।



ଗୁମ୍ଫାଟି ଅଛି ସୁନିର୍ମଳ ।
ବାମ୍ଫୀର ଜଳ ସୁଶୀତଳ ।
ସମ୍ପଦକାଳେ ସର୍ବେ ସଖା,
ବିପଦେ ନ ଦିଅନ୍ତି ଦେଖା ।

କୁମ୍ଭୀର ବଡ଼ ଭୟଙ୍କର, ନାଶଇ କେତେ ନାରୀ ନର ।



କ କ କ୍କ ଚକ୍କଣ, ଧିକ୍କାର, କୁକ୍କୁଟ, କୁକ୍କୁର ।
କ ତ କ୍ତ ରକ୍ତ, ଶକ୍ତି, ଭକ୍ତ, ବିଭକ୍ତ ।
କ ଷ କ୍ଷ ପକ୍ଷ, ଲକ୍ଷ, ଲକ୍ଷଣ, ରକ୍ଷା, ଦକ୍ଷିଣ, ପରୀକ୍ଷା, କ୍ଷେତ୍ର ।
ଗ ଦ ଗ୍ଦ ବାଗ୍ଦାନ, ବାଗ୍ଦେବୀ ।
ଗ ଧ ଗ୍ଧ ଦୁଗ୍ଧ, ମୁଗ୍ଧ, ସ୍ନିଗ୍ଧ ।



କୁକ୍କୁଟମୁଣ୍ଡେ ଅଛି ଚୂଳ । ମାଟି ଭିତରେ ବୃକ୍ଷମୂଳ ।
ସାଧୁର ଲକ୍ଷଣ ଈଶ୍ୱରଭକ୍ତି ;
ଦୁଗ୍ଧ ପାନ କଲେ ବଢଇ ଶକ୍ତି ।

---

ଚ ଚ ଚ୍ଚ ଉଚ୍ଚ, ଉଚ୍ଚାରଣ, ଉଚ୍ଚୈଃ ।
ଚ ଛ ଚ୍ଛ ଗୁଚ୍ଛ, ତୁଚ୍ଛ, ଆଚ୍ଛାଦନ, ବିଚ୍ଛେଦ, ସ୍ୱଚ୍ଛ, କଚ୍ଛପ ।
ଚ ଞ ଚ୍ଞ ଯାଚ୍ଞା
ଜ ଜ ଜ୍ଜ କଜ୍ଜଳ, ମଜ୍ଜନ, ସଜ୍ଜନ, ଲଜ୍ଜା, ସଜ୍ଜା, ଲଜ୍ଜିତ ।
ଜ ଝ ଜ୍ଝ କୁଜ୍ଝଟୀ, କୁଜ୍ଝଟିକା ।
ଜ ଞ ଜ୍ଞ ବିଜ୍ଞ, ଆଜ୍ଞା, ଯଜ୍ଞ, ଜ୍ଞାନ ।

ଜ୍ଞାନୀ ସଜ୍ଜନ ସଙ୍ଗ ଧର, ମନ ନିର୍ମଳ ସ୍ୱଚ୍ଛ କର,
ପ୍ରଭୁଙ୍କ ନାମ ଉଚ୍ଚାରଣ, କର ହେ ନରନାରୀଗଣ ।

---

ଟ ଟ ଟ୍ଟ ଅଟ୍ଟହାସ, ଅଟ୍ଟାଳିକା ।
ଡ଼ ଗ ଡ଼୍ଗ ଖଡ଼୍ଗ ।
ଡ ଡ ଡ୍ଡ ଉଡ୍ଡୀନ, ଉଡ୍ଡୀୟମାନ ।



ବିବିଧ ରଙ୍ଗର ପତାକାମାନ ।
ଅଟ୍ଟାଳିକା ଶିରେ ଉଡ୍ଡୀୟମାନ ।
ଖଡ଼୍ଗ ଅବା ଖଣ୍ଡା ଧରି ଚଳିଲେ ଖଣ୍ଡାଇତ ।
ଖଡ଼୍ଗଯୋଗୁଁ ଖଡ଼୍ଗୀବୋଲି ଗଣ୍ଡାର ବିଦିତ ।



ତ  କ  ତ୍କ  ଉତ୍କଳ, ଉତ୍କଣ୍ଠା, ବଳାତ୍କାର, ଉତ୍କୃଷ୍ଟ ।

ତ  ତ  ତ୍ତ  ଉତ୍ତମ, ଉତ୍ତର, ଉତ୍ତାପ, ମୃତ୍ତ ।

ତ  ଥ  ତ୍ଥ  ଉତ୍ଥାନ, ଉତ୍ଥାପନ ।

ତ  ପ  ତ୍ପ  ଉତ୍ପଳ, ଉତ୍ପାତ, ଉତ୍ପନ୍ନ ।

ତ  ସ  ତ୍ସ  ବତ୍ସ, ବତ୍ସର, ସମ୍ବତ୍ସର ।

ଦ  ଗ  ଦ୍ଗ  ମୁଦ୍ଗର, ଉଦ୍ଗାର ।

ଦ  ଘ  ଦ୍ଘ  ଉଦ୍ଘାଟନ ।

ଦ  ଦ  ଦ୍ଦ  ଉଦ୍ଦୀପନ, ଉଦ୍ଦେଶ, ଉଦ୍ଦେଶ୍ୟ ।

ଦ  ଧ  ଦ୍ଧ  ଯୁଦ୍ଧ, ରୁଦ୍ଧ, ଶୁଦ୍ଧ, ବୁଦ୍ଧି, ସିଦ୍ଧି, ଉଦ୍ଧାର ।

ଦ  ବ  ଦ୍ବ  ଦ୍ବନ୍ଦ୍ବ, ବୁଦ୍ବୁଦ ।

ଦ  ଭ  ଦ୍ଭ  ଅଦ୍ଭୁତ, ଉଦ୍ଭିଦ, ସଦ୍ଭାବ, ଉଦ୍ଭବ ।

ଦ  ଯ  ଦ୍ୟ  ଉଦ୍ୟୋଗ ।



---

ଉତ୍ତରଦିଗେ ବୃକ୍ଷଡାଳେ,
ପେଚା ଗର୍ଜ୍ଜିଲା ରାତ୍ରିକାଳେ ।
ଆମ୍ଭ ଜନ୍ମଭୂମି ଉତ୍କଳଦେଶ,
ଉତ୍କଳ କୀର୍ତ୍ତି ଅଟେ ଅଶେଷ ।
ସର୍ବ ଉତ୍ପାତୁଁ ଢୋଟେ ଦୂର,
ରଖନ୍ତୁ ବତ୍ସ କୃପା କର ।
ଅନନ୍ତ ଅଦ୍ଭୁତ ମହିମା,
କେ କହି ପାରେ ତାର ସୀମା ।
ଉଦ୍ୟୋଗ କଲେ ସର୍ବସିଦ୍ଧି,
ତପସ୍ୟା କଲେ ଚିତ୍ତଶୁଦ୍ଧି ।



---

ପ ତ ପ୍ତ ଗୁପ୍ତ, ସୁପ୍ତ, ଲିପ୍ତ, କ୍ଷିପ୍ତ ।
ପ ପ ପ୍ପ ପିପ୍ପଳୀ ।
ପ ସ ପ୍ସ ଅପ୍ସରା ।
ବ ଜ ବ୍ଜ ଅବ୍ଜ, କୁବ୍ଜ ।
ବ ଦ ବ୍ଦ ଅବ୍ଦ, ଶବ୍ଦ ।
ବ ଧ ବ୍ଧ ଲୁବ୍ଧ, କ୍ଷୁବ୍ଧ, ଆରବ୍ଧ ।

---

ଅବ୍ଜ ଫୁଟିଛି ସରୋବରରେ, ବେଢି ଅଛନ୍ତି ମଧୁକରରେ ।
କହିବି ନାହିଁ ଗୁପ୍ତକଥା, ନ ଦଅ ଲୋକମନେ ବ୍ୟଥା ।
ପଡ଼ନ୍ତେ କର୍ଣ୍ଣେ ସେହି ଶବ୍ଦ, ଆନନ୍ଦ ପ୍ରାଣେ ହେଲା ଲବ୍ଧ ।



ଲ କ ଲ୍କ ବଲ୍କଲ, ଶୁଲ୍କ ।
ଲ କ ଲ୍କ ଉଲ୍କା ।
ଲ ଗ ଲ୍ଗ ଫଲ୍ଗୁ, ଫାଲ୍ଗୁନ ।
ଲ ପ ଲ୍ପ ଅଲ୍ପ, ଗଲ୍ପ, କଲ୍ପନା, ସଂକଲ୍ପ, ଜଲ୍ପନା ।
ଲ ଫ ଲ୍ଫ ଗୁଲ୍ଫ ।
ଲ ଭ ଲ୍ଭ ପ୍ରଗଲ୍ଭ ।
ଶ ଚ ଶ୍ଚ ନିଶ୍ଚୟ, ପଶ୍ଚିମ, ପଶ୍ଚାତ୍ ।
ଶ ଛ ଶ୍ଛ ଶିରଶ୍ଛେଦ, ଦୁଶ୍ଛେଦ୍ୟ ।
ଷ କ ଷ୍କ ଶୁଷ୍କ, ନିଷ୍କର, ଦୁଷ୍କର, ପରଷ୍କାର ।
ଷ ଟ ଷ୍ଟ ଅଷ୍ଟ, କଷ୍ଟ, ଦୁଷ୍ଟ, ପୁଷ୍ଟ, ହୃଷ୍ଟ, ରୁଷ୍ଟ, ସମଷ୍ଟି ।
ଷ ଠ ଷ୍ଠ ଷଷ୍ଠ, କନିଷ୍ଠ, ବଳଷ୍ଠ, ଶ୍ରେଷ୍ଠ, ଗରଷ୍ଠ, ନିଷ୍ଠୁର ।
ଷ ଣ ଷ୍ଣ କୃଷ୍ଣ, ବଷ୍ଣୁ, ସହିଷ୍ଣୁ, ବୈଷ୍ଣବ ।
ଷ ପ ଷ୍ପ ପୁଷ୍ପ, ନିଷ୍ପାପ, ନିଷ୍ପୀଡ଼ନ ।
ଷ ଫ ଷ୍ଫ ନିଷ୍ଫଳ, ନିଷ୍ଫେନ ।

ସ କ ସ୍କ ତସ୍କର, ନମସ୍କାର, ଅୟସ୍କାନ୍ତ, ପୁରସ୍କାର ।

ସ ଖ ସ୍ଖ ସ୍ଖଳନ ।

ସ ତ ସ୍ତ ସ୍ତବ୍ଧ, ପ୍ରଶସ୍ତ, ଦୁସ୍ତର, ନିସ୍ତାର, ବିସ୍ତାର ।

ସ ଥ ସ୍ଥ ସ୍ଥାନ, ସ୍ଥିର, ସ୍ଥିତ, ସ୍ଥାବର, ଆସ୍ଥା, ଅସ୍ଥି, ସ୍ଥୂଳ ।

ସ ପ ସ୍ପ ସ୍ପର୍ଶ, ପରସ୍ପର, ଆସ୍ପଦ, ବାଷ୍ପ ।

ସ ଫ ସ୍ଫ ସ୍ଫଟିକ, ସ୍ଫୀତ, ଆସ୍ଫାଳନ ।

ଆରେ କେଡ଼େ ବଡ଼ କୁକ୍କୁରଟାଏ । ସେ ଅସ୍ଥି ଚୋବାଉ ଥିଲା ।



ଫାଲ୍ଗୁନମାସରେ ଦୋଲଯାତ୍ରା ହୁଏ । କେହି କେହି ବଲ୍କଲ ପିନ୍ଧନ୍ତି । ପଶ୍ଚିମଦିଗରେ ଅଳ୍ପ ମେଘ ଉଠିଅଛି । ଶୁଷ୍କକାଷ୍ଠ ଜାଳିବାକୁ ଭଲ । ଗୁରୁଜନଙ୍କୁ ନମସ୍କାର କର । କେତେକ ବୃକ୍ଷ ପୁଷ୍ପବନ୍ତ ହନ୍ତି ନାହିଁ । ଜଳ ଗରମ ହେଲେ ସେଥିରୁ ବାଷ୍ପ ବାହାରେ । ସ୍ଫଟିକ ସ୍ୱଚ୍ଛ ଅଟେ । ତାଙ୍କ ମୁଖ ନିସ୍ତେଜ ଦିଶୁଅଛି । ଦୟାଳୁ ଲୋକ ଦୁଃଖିମାନଙ୍କର କଷ୍ଟ ହରଣ କରନ୍ତି ।

## ଭିନ୍ନ ବର୍ଣ୍ଣର ସଂଯୋଗ ।

| | | | | |
|---|---|---|---|---|
| କ | ତ | ର | କ୍ତ୍ର | ବକ୍ତ୍ର । |
| କ | ଷ | ଣ | କ୍ଷ୍ଣ | ତୀକ୍ଷ୍ଣ । |
| କ | ଷ | ମ | କ୍ଷ୍ମ | ସୂକ୍ଷ୍ମ, ଲକ୍ଷ୍ମୀ, ଯକ୍ଷ୍ମା । |
| କ | ଷ | ଯ | କ୍ଷ୍ୟ | ଲକ୍ଷ୍ୟ, ସାକ୍ଷ୍ୟ, ଭକ୍ଷ୍ୟ । |
| ଙ | କ | ତ | ଙ୍କ୍ତ | ପଙ୍କ୍ତି |
| ଙ | କ | ଷ | ଙ୍କ୍ଷ | ଆକାଙ୍କ୍ଷା । |
| ଜ | ଜ | ବ | ଜ୍ଜ୍ୱ | ଉଜ୍ଜ୍ୱଳ । |
| ଣ | ଡ | ର | ଣ୍ଡ୍ର | ପୁଣ୍ଡ୍ର । |
| ତ | ତ | ବ | ତ୍ତ୍ୱ | ତତ୍ତ୍ୱ, ମହତ୍ତ୍ୱ, ସତ୍ତ୍ୱ । |
| ତ | ତ | ର | ତ୍ତ୍ର | ପୁତ୍ତ୍ର । |
| ତ | ମ | ଯ | ତ୍ମ୍ୟ (ତ୍ମ୍ୟ) | ମାହାତ୍ମ୍ୟ, ଦୌରାତ୍ମ୍ୟ । |
| ତ | ସ | ନ | ତ୍ସ୍ନ | ଜ୍ୟୋତ୍ସ୍ନା । |
| ତ | ସ | ଯ | ତ୍ସ୍ୟ | ମତ୍ସ୍ୟ । |
| ନ | ତ | ଯ | ନ୍ତ୍ୟ | ଅନ୍ତ୍ୟ । |
| ନ | ତ | ର | ନ୍ତ୍ର | ତନ୍ତ୍ର, ମନ୍ତ୍ର, ଯନ୍ତ୍ର, ମନ୍ତ୍ରୀ । |
| ନ | ତ | ବ | ନ୍ତ୍ୱ | ସାନ୍ତ୍ୱନା । |
| ନ | ଦ | ର | ନ୍ଦ୍ର | ଚନ୍ଦ୍ର, ସାନ୍ଦ୍ର, ଇନ୍ଦ୍ର, ଇନ୍ଦ୍ରିୟ । |
| ନ | ଦ | ବ | ନ୍ଦ୍ୱ | ଦ୍ୱନ୍ଦ୍ୱ । |
| ନ | ଧ | ର | ନ୍ଧ୍ର | ରନ୍ଧ୍ର । |
| ନ | ଧ | ଯ | ନ୍ଧ୍ୟ | ବିନ୍ଧ୍ୟ, ସନ୍ଧ୍ୟା, ବନ୍ଧ୍ୟା । |
| ନ | ନ | ଯ | ନ୍ନ୍ୟ | ସନ୍ନ୍ୟାସ, ସନ୍ନ୍ୟାସୀ । |
| ମ | ପ | ର | ମ୍ପ୍ର | ସମ୍ପ୍ରତି, ସମ୍ପ୍ରଦାୟ, ସମ୍ପ୍ରଦାନ । |







ମ ଭ ର ମ୍ଭ୍ର ସମ୍ଭ୍ରମ, ସମ୍ଭ୍ରାନ୍ତ ।
ର ଚ ଚ ର୍ଚ୍ଚ ଅର୍ଚ୍ଚନା, ଚର୍ଚ୍ଚା ।
ର ଚ ଛ ର୍ଚ୍ଛ ମୂର୍ଚ୍ଛା, ମୂର୍ଚ୍ଛନ ।
ର ଣ ଣ ର୍ଣ୍ଣ ପର୍ଣ୍ଣ, ସ୍ୱର୍ଣ୍ଣ, ପୂର୍ଣ୍ଣ, ଚୂର୍ଣ୍ଣ ।
ର ତ ତ ର୍ତ୍ତ କର୍ତ୍ତନ, କୀର୍ତ୍ତି, ମୂର୍ତ୍ତି ।
ର ଦ ଧ ର୍ଦ୍ଧ ଅର୍ଦ୍ଧ, ନର୍ଦ୍ଧାରତ, ବର୍ଦ୍ଧନ ।
ର ତ ସ ର୍ତ୍ସ ଭର୍ତ୍ସନା ।
ର ଦ ର ର୍ଦ୍ର ଆର୍ଦ୍ର ।
ର ଯ ଯ ର୍ଯ୍ୟ କାର୍ଯ୍ୟ, ଧୈର୍ଯ୍ୟ, ମର୍ଯ୍ୟାଦା ।



ର ଶ ବ ର୍ଶ୍ୱ ପାର୍ଶ୍ୱ, ପାରପାର୍ଶ୍ୱିକ ।
ଷ କ ର ଷ୍କ୍ର ନିଷ୍କ୍ରିୟ ।
ଷ ଟ ର ଷ୍ଟ୍ର ଉଷ୍ଟ୍ର, ରଷ୍ଟ୍ର ।
ଷ ପ ର ଷ୍ପ୍ର ଦୁଷ୍ପ୍ରାପ୍ୟ, ନିଷ୍ପ୍ରୟୋଜନ ।
ସ ତ ର ସ୍ତ୍ର ଅସ୍ତ୍ର, ଶସ୍ତ୍ର, ଶାସ୍ତ୍ର, ବସ୍ତ୍ର ।
ସ ଥ ଯ ସ୍ଥ୍ୟ ସ୍ୱାସ୍ଥ୍ୟ, ଗାର୍ହସ୍ଥ୍ୟ ।

---

## ମିଶ୍ରସଂଯୋଗ—ଚ୍ତୁରଅକ୍ଷର ।

ନ ତ ର ଯ ନ୍ତ୍ର୍ୟ ସ୍ୱାତନ୍ତ୍ର୍ୟ, ପାରତନ୍ତ୍ର୍ୟ
ର ତ ତ ଯ ର୍ତ୍ତ୍ୟ ମର୍ତ୍ତ୍ୟ ।
ର ତ ତ ର ର୍ତ୍ତ୍ର କର୍ତ୍ତ୍ରୀ ।
ର ଦ ଧ ବ ର୍ଦ୍ଧ୍ୱ ଊର୍ଦ୍ଧ୍ୱ ।

ବୁଢିଆଣୀ ଜାଲ ବଡ଼ ସୂକ୍ଷ୍ମ । ମୂଷିକର ଦନ୍ତ ତୀକ୍ଷ୍ଣ । ଉଦ୍ୟୋଗୀ ପୁରୁଷକୁ ଲକ୍ଷ୍ମୀ ମିଳେ । ସେ ଭୁମୃର ଶୁଭ୍ରକାନ୍ତି ଅଛନ୍ତି । ଶରତ୍କାଳରେ ଚନ୍ଦ୍ର ଅତିଶୟ ଉଜ୍ଜ୍ୱଳ ଦିଶେ । ତାହାଙ୍କର ମହତ୍ତ୍ୱ ବିଷୟ ଚିନ୍ତାକର । ସତ୍ୟଂ, ଏହି ମନ୍ତ୍ରଟି ପାଠକର । ଶୋକାର୍ତ୍ତ ଲୋକକୁ ସାନ୍ତ୍ୱନା ଦିଅ । ଚକ୍ଷୁ, କର୍ଣ୍ଣ, ନାସା, ଜିହ୍ୱା, ତ୍ୱକ୍ ବା ଚର୍ମ ଏହି ପାଞ୍ଚ ଇନ୍ଦ୍ରିୟ । ସନ୍ଧ୍ୟା ସମୟରେ ସନ୍ନ୍ୟାସୀ ଧ୍ୟାନ କରନ୍ତି । ପିତା କନ୍ୟା ସମ୍ପ୍ରଦାନ କଲେ । ଜ୍ୟୋତିଷଶାସ୍ତ୍ରର ଚର୍ଚ୍ଚା କର । ସେ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ଆର୍ଦ୍ର ବସ୍ତ୍ର ପିନ୍ଧିବ ନାହିଁ । ତାଙ୍କପରି ସଜ୍ଜନ ଦୁର୍ଲ୍ଲଭ । ଦକ୍ଷିଣପାର୍ଶ୍ୱରେ ପୀଡ଼ା ହୋଇଅଛି । ସର୍ବସୁଖର ମୂଳ ସ୍ୱାସ୍ଥ୍ୟ । ଅର୍ଦ୍ଧରାତ୍ର ସମୟରେ ମୁଁ ଊର୍ଦ୍ଧ୍ୱକୁ ଅନାଇ ନକ୍ଷତ୍ରପୂର୍ଣ୍ଣ ଆକାଶକୁ ଦେଖିଲି । ସମୟକୁ ବୃଥା ନିଷ୍ପ୍ରୟୋଜନ କାର୍ଯ୍ୟରେ ନଷ୍ଟ କରିବ ନାହିଁ ।



ବିବିଧପାଠ ।

ମସ୍ତକ ଦେହର ଉତ୍ତମ ଅଙ୍ଗ । ପ୍ରତିହସ୍ତରେ ପାଞ୍ଚ ଅଙ୍ଗୁଳି । ପ୍ରତିପାଦରେ ପାଞ୍ଚ ଅଙ୍ଗୁଳି । ମନୁଷ୍ୟର ଦୁଇଟି ବାହୁ, ଦୁଇଟି ହସ୍ତ,

ଦୁଇଟି ପାଦ, ଦୁଇଟି ଚକ୍ଷୁ, ଦୁଇଟି କର୍ଣ୍ଣ, ଦୁଇଟି ଓଷ୍ଠ । ନାସିକାରେ ଦୁଇଟି ରନ୍ଧ୍ର ଅଛି । ଉଦରରେ ପାକଯନ୍ତ୍ର ଅଛି । ମସ୍ତକରୁ ପାଦପର୍ଯ୍ୟନ୍ତ ସମସ୍ତ ଦେହରେ ରକ୍ତ ପ୍ରବାହିତ ହେଉଅଛି ।

---

କିଏ ତୁମ୍ଭଙ୍କୁ ଏବଂ ଅନ୍ୟ ସବୁ ଜୀବମାନଙ୍କୁ କରିଅଛନ୍ତି ? କିଏ ତୁମ୍ଭଙ୍କୁ ଦେଖିବାପାଇଁ ଚକ୍ଷୁ, ଶୁଣିବାପାଇଁ କର୍ଣ୍ଣ, ଶୁଙ୍ଘିବାପାଇଁ ନାସିକା, ସ୍ୱାଦ ବାରିବାପାଇଁ ଜିହ୍ୱା, କଥା କହିବାପାଇଁ ମୁଖ, ପଦାର୍ଥମାନ ଧରିବା ପାଇଁ ହସ୍ତ, ଏକସ୍ଥାନରୁ ଅନ୍ୟସ୍ଥାନକୁ ଯିବାପାଇଁ ପାଦ ଦେଇଅଛନ୍ତି ? କିଏ ତୁମ୍ଭଙ୍କୁ ଭଲ, ମନ୍ଦ, ନ୍ୟାଯ୍ୟ, ଅନ୍ୟାଯ୍ୟ ବିଚାର କରିବାପାଇଁ ବୁଦ୍ଧି ଦେଇଅଛନ୍ତି ? ପରମେଶ୍ୱର ତୁମ୍ଭଙ୍କୁ ସୃଷ୍ଟି କରିଅଛନ୍ତି, ତୁମ୍ଭଙ୍କୁ ସର୍ବଦା ରକ୍ଷା କରୁଅଛନ୍ତି । ଆହା, ତାଙ୍କର ଦୟା କିଏ ବର୍ଣ୍ଣି ପାରିବ !

—୦✻()✻୦—

ସୂର୍ଯ୍ୟ ଆମ୍ଭମାନଙ୍କୁ ଆଲୁଅ ଓ ଉତ୍ତାପ ଦେଉଅଛି । ସୂର୍ଯ୍ୟ ନ ଥିଲେ ସଂସାର ଅନ୍ଧକାରମୟ ଓ ଅତି ଶୀତଳ ରହି- ଥାନ୍ତା । ପୃଥିବୀରେ ଜୀବ ଜନ୍ତୁ, ବୃକ୍ଷ ଲତା କିଛି ଜନ୍ମି ପାରନ୍ତା ନାହିଁ । ସୂର୍ଯ୍ୟ ପୃଥିବୀଠାରୁ ଅତି ବୃହତ । ପୃଥିବୀ ସୂର୍ଯ୍ୟର ଚତୁର୍ଦ୍ଦିଗରେ ବର୍ଷକେ ଥରେ ବୁଲେ ।



—ঃ✻(✻)✻ঃ—

ରାତ୍ରିକାଳରେ ଚନ୍ଦ୍ର ଉଜ୍ଜ୍ୱଳ ଦେଖାଯାଏ । ଚନ୍ଦ୍ର କ୍ରମେ୨ ବଢୁଥାଏ । ଯେଉଁଦିନ ଚନ୍ଦ୍ର ସମ୍ପୂର୍ଣ୍ଣ ଗୋଲ ହୁଏ ବା ପୂର୍ଣ୍ଣଚନ୍ଦ୍ର ହୁଏ, ସେଦିନ ପୂର୍ଣ୍ଣିମା ବୋଲିଯାଏ । ଯେଉଁ ଦିନ ଚନ୍ଦ୍ର ଏକା-



ବେଳକେ ଦେଖାଯାଏ ନାହିଁ, ତାହାକୁ ଅମାବାସ୍ୟା କହନ୍ତି । ଚନ୍ଦ୍ରର ନିଜର ଆଲୁଅ ନାହିଁ । ଯେଉଁ ଆଲୁଅକୁ ଜ୍ୟୋତ୍ସ୍ନା ବୋଲୁଯାଏ ତାହା ଚନ୍ଦ୍ର ସୂର୍ଯ୍ୟଠାରୁ ପାଏ । ଚନ୍ଦ୍ର ପୃଥିବୀ ଅପେକ୍ଷା କ୍ଷୁଦ୍ର । ଚନ୍ଦ୍ର ପୃଥିବୀର ଚାରିଆଡ଼ରେ ମାସକେ ଥରେ ବୁଲେ ।



ସୂର୍ଯ୍ୟ ଯେଉଁ ଦିଗରେ ଉଏଁ, ତୁମ୍ଭେ ସେହିଦିଗକୁ ଅନାଇଅଛ । ସେହି ଦିଗ ପୂର୍ବଦିଗ । ତୁମ୍ଭର ଦକ୍ଷିଣହସ୍ତ ଦକ୍ଷିଣଦିଗକୁ ଅଛି, ବାମ ହସ୍ତ ଉତ୍ତର ଦିଗକୁ ଅଛି, ତୁମ୍ଭର ପଛଆଡ଼ ପଶ୍ଚିମ ଦିଗ ।

ତୁମ୍ଭେ ପଶ୍ଚିମଦିଗକୁ ଅନାଇ ଠିଆ ହେଲେ, ତୁମ୍ଭର ଦକ୍ଷିଣହସ୍ତ କେଉଁଦିଗକୁ ହେବ ? ତୁମ୍ଭେ ଦକ୍ଷିଣଦିଗକୁ ଅନାଇ ଠିଆ ହେଲେ, ତୁମ୍ଭର ବାମହସ୍ତ କେଉଁ ଦିଗକୁ ହେବ ? ତୁମ୍ଭେ ଉତ୍ତର ଆଡ଼କୁ ଅନାଇଁ ଠିଆ ହେଲେ, ତୁମ୍ଭର ପିଠି କେଉଁ ଦିଗକୁ ରହିବ ?



ଦିନ ରାତି ମିଶି ଦିବସ ଏକ । ସାତ ଦିବସରେ ସପ୍ତାହ ଲେଖ ।
ସପ୍ତାହର ସାତବାରର ନାମ । ମନେ ସଦା ରଖିଥିବ ହେ ରାମ ।
ରବି ପରେ ସୋମ, ତାପରେ ମଙ୍ଗଳ
ତାପରେ ଯେ ବୁଧବାର ।
ଗୁରୁ, ଶୁକ୍ର, ଶନି ଆସେ ତାହା ପରେ
ସାତବାର ଏ ପ୍ରକାର ।



ପନ୍ଦର ଦିନକୁ ଏକ ପକ୍ଷ ବୋଲି
ଦୁଇ ପକ୍ଷେ ଏକ ମାସ ।

ଦୁଇ ମାସ ମିଳି ଏକ ଋତୁ ହୁଏ
ମନେ ରଖ ପୀତବାସ ।
ଶୁକ୍ଳ ପକ୍ଷେ ଚନ୍ଦ୍ର ପ୍ରତି ଦିବସରେ
ବଢ଼ଇ ପୂର୍ଣ୍ଣିମା ଯାଏ ।
କୃଷ୍ଣ ପକ୍ଷେ ପୁଣି ଅମାବସ୍ୟା ଯାଏ
ଅଳ୍ପେ ଅଳ୍ପେ ଛିଡ଼ୁଥାଏ ।

---

ଦ୍ୱାଦଶ ମାସରେ ଛଅ ଋତୁ ହୁଏ
କେ କହିପାରିବ କହ ।
ଗ୍ରୀଷ୍ମ, ବର୍ଷା, ଶରତ୍, ଶିଶିର ହେମନ୍ତ,
ବସନ୍ତ ଋତୁ ଏ ଛଅ ।

---

ଗ୍ରୀଷ୍ମେ ବୈଶାଖ, ଜ୍ୟେଷ୍ଠ ମାସ । ପ୍ରଚଣ୍ଡ ରୌଦ୍ର ପରକାଶ ।
ବର୍ଷାରେ ଆଷାଢ଼, ଶ୍ରାବଣ । ମେଘ ବରଷେ ଘନ ଘନ ।
ଭାଦ୍ର, ଆଶ୍ୱିନ ଶରତରେ । ନିର୍ମଳ ଶୋଭା ଜଗତରେ ।
ହିମେ କାର୍ତ୍ତିକ, ମାର୍ଗଶିର । ରାତିରେ ପଡ଼ଇ ଶିଶିର ।
ଶୀତରେ ପୌଷ, ମାଘ ମାସ । ଦେହରେ ରଖ ଶୀତବାସ ।
ଫାଲ୍ଗୁନ, ଚୈତ୍ର ବସନ୍ତରେ । ମୃଦୁମଳୟ ମନ ହରେ ।
ବାରମାସର କଥା ଏହି । ହେଲ ବାଳକେ ମନ ଦେଇ ।

---

ବୃକ୍ଷ ବୀଜରୁ ଜାତ ହୁଏ । ବଟ ବୃକ୍ଷର ବୀଜ କେଡ଼େ କ୍ଷୁଦ୍ର । ଦେଖ କେଡ଼େ କ୍ଷୁଦ୍ର ବୀଜରୁ କେଡ଼େ ବଡ଼ ବୃକ୍ଷ ଜନ୍ମଇ । ସଂସାରରେ କେତେ



ପ୍ରକାର ବୃକ୍ଷ ଅଛି । ବଟ, ଅଶ୍ୱତ୍ଥ, ନାରକେଳ, ଆମ୍ବ, ତାଳ, ଶାଳ, ପିଆଶାଳ, ଅସନ, ଦେବଦାରୁ ପ୍ରଭୃତି ଶତ ଶତ ପ୍ରକାର ବଡ଼ ବୃକ୍ଷଅଛି । ମାଧବୀ, ମାଳତୀ, ନଆଳି, ଅପରାଜିତା ପ୍ରଭୃତି ଲଟାନ୍ତି, ଅର୍ଥାତ୍ ଲଟାଇ ଲଟାଇ ମାଡ଼ି ଯାଆନ୍ତି ବୋଲି ସେମାନଙ୍କୁ ଲତା ବୋଲାଯାଏ । ଶତ ଶତ ପ୍ରକାର ଲତା ଅରଣ୍ୟରେ ଦେଖାଯାଏ । ମନୁଷ୍ୟମାନେ ନାନାପ୍ରକାର ଚାଷ କରନ୍ତି, ଯଥା, ଆଖୁ, ଧାନ, ମୁଗ, ହରଡ଼, ଗହମ, ବୁଣ୍ଟ, ବ୍ରୀହି, ଯବ ଇତ୍ୟାଦି ।

ଆମ୍ଭ ଗ୍ରାମର କୃଷକମାନେ ସେମାନଙ୍କର ଧାନଜମି ସବୁ ହଳ କରି ସାରଲେଣି । ଆଜି ଚାଷିମାନେ ଧାନ ବୁଣିବେ । ଆସ ଦେଖିବାକୁ ଯିବା । ଯେଉଁ ଧାନ ବୁଣାଯାଏ ତାହାକୁ ବିହନ ବୋଲନ୍ତି । ବିହନ ବୁଣି ସାରି କୃଷକମାନେ ଜମି ଉପରେ ମଇ ଦେଇ ତାହାକୁ ଚିକଣ କରି ଦିଅନ୍ତି । ବିହନ ବୃଷ୍ଟିଜଳ ଓ ରୌଦ୍ର ପାଇ ପୁଷ୍ଟ ହୋଇ ଧାନ ଗଛ ହେବ । ଧାନ ଗଛରେ ଧାନ ଫଳିଲେ; କୃଷକମାନେ ଆନନ୍ଦରେ ଧାନ ଅମଳ କରିବେ ।

---



ମତ୍ସ୍ୟମାନେ ଜଳରେ ବାସ କରନ୍ତି । ସେମାନଙ୍କୁ ଜଳରୁ କାଢ଼ିଆଣିଲେ ସେମାନେ

ଅଳ୍ପକ୍ଷଣ ମଧ୍ୟରେ ମରି ଯିବେ । ମତ୍ସ୍ୟମାନଙ୍କର ପାଦ ନାହିଁ । ସେମାନଙ୍କ ଲାଞ୍ଜ ଓ ଡେଣା ଥିବାରୁ ସେମାନେ ଲାଞ୍ଜ ଓ ଡେଣା ସାହାଯ୍ୟରେ ସନ୍ତରଣ କରନ୍ତି । ଅଧିକାଂଶ ମତ୍ସ୍ୟମାନଙ୍କ ଦେହରେ ଶଳ୍କ ବା କାତି ଥାଏ । ମତ୍ସ୍ୟମାନେ ଅଣ୍ଡା ବା ଡ଼ିମ୍ବରୁ ଜାତ ।

---

ତୁମ୍ଭେ ମହୁମାଛିମାନଙ୍କର ମହୁବସା ଦେଖିଅଛ କି ? ମହୁବସା



ଭିତରେ କ୍ଷୁଦ୍ର କ୍ଷୁଦ୍ର କେତେ କୋଠରି ଅଛି । ସବୁ କୋଠରି-ଗୁଡ଼ିକର ଆକାର ଓ ଆୟତନ ସମାନ । ମହୁମାଛିମାନେ ପୁଷ୍ପମାନ-ଙ୍କରୁ ମଧୁ ଆଣି ସେହି କୋଠରି-ମାନଙ୍କରେ ମଧୁ ସଞ୍ଚୟ କରି ରଖନ୍ତି । ଦେଖ, କପରି କୌଶଳରେ ମଧୁଚକ୍ର ବା ମହୁବସା ନିର୍ମିତ ହୋଇ-ଅଛି । ମଧୁ ମିଷ୍ଟ ଓ ହିତକାରୀ । ମହୁମାଛିମାନେ ଅତ୍ୟନ୍ତ ପରିଶ୍ରମୀ । ମଧୁମକ୍ଷିକା ପରି ପରିଶ୍ରମ କର ଓ ସଞ୍ଚୟ କର ।

---

ଓ୍ଃ ଆଜି କାଲି ଘରଅଡ଼େ ମାଛି ଭଣଭଣ ହେଉଅଛନ୍ତି । ଖାଇଲା



ବେଳେ ମାଛି, ଶୋଇଲା ବେଳେ ମାଛି, ମନୁଷ୍ୟଙ୍କୁ ବିରକ୍ତ କରୁଅଛନ୍ତି । ମାଛିକୁ ଧରିବା ସହଜ ନୁହେଁ । ତାହାର ଛଅଟା ଗୋଡ଼, ଦୁଇଟା ଡେଣା ଏବଂ ଅନେକ ଗୁଡ଼ାଏ ଚକ୍ଷୁ ଅଛି । ମକ୍ଷିକା ବା ମାଛି ଅତି-ଶୟ ବେଶି ହେଲେ ବିରକ୍ତି-କର ହୁଅନ୍ତି ସତ୍ୟ, କିନ୍ତୁ ସେମାନଙ୍କ ଦ୍ୱାରା କେତେକ ଉପକାର ମଧ୍ୟ ସାଧିତ ହୁଏ । ସେମାନେ ଘରେ ଘରଅଡ଼େ ପଡ଼ିଥିବା ପଚା ସଢ଼ା ଦ୍ରବ୍ୟ ସବୁ ଖାଇ ପକାନ୍ତି । ସେମାନେ

ତାହା ନ ଖାଇଲେ ଘରର ବାୟୁ ଦୂଷିତ ହୋଇ ନାନା ପୀଡ଼ା ଜନ୍ମାଇବ ।

---



ପକ୍ଷିମାନେ କି ସୁନ୍ଦର ବସା ନିର୍ମାଣ କରନ୍ତି । କାଠି, କୁଟା, ଶୁଷ୍କପତ୍ର, ରୋମ ପ୍ରଭୃତି ନେଇ ପକ୍ଷିମାନେ ତାହାଦ୍ୱାରା ବସା ନିର୍ମାଣ କରନ୍ତି । ଏକ ଏକ ଜାତି ପକ୍ଷୀ ଏକ ଏକ ପ୍ରକାର ବସା ନିର୍ମାଣ କରନ୍ତି । ପକ୍ଷିମାନେ ବସା ମଧ୍ୟରେ ଡିମ୍ବ ରଖି, ଡିମ୍ବଗୁଡ଼ିକ ବାରମ୍ବାର ଉଷୁମା-



ଇଲେ, ଡିମ୍ବ ମଧ୍ୟରୁ ପକ୍ଷିଶାବକ ବାହାରନ୍ତି । ଶାବକମାନେ ଡିମ୍ବରୁ ବାହାରିଲା କ୍ଷଣି ଉଡ଼ି ପାରନ୍ତି ନାହିଁ । ସେମାନଙ୍କର ବାପ ମା ସେମାନଙ୍କୁ ଅତି ଯତ୍ନରେ ଖୁଆଇ ରକ୍ଷା କରନ୍ତି । ଏହି ପ୍ରକାରେ କ୍ରମେ କ୍ରମେ ସବଳ ହୋଇ ଶାବକମାନେ ଆକାଶରେ ଉଡ଼ିବାକୁ ଶିଖନ୍ତି ।

---

## ସୁନ୍ଦର ସଂସାର ।

ଆକାଶ ଦିଶେ କି ସୁନ୍ଦର,
ତାହାକୁ ରଚିଲେ ଈଶ୍ୱର ।
ଉଜ୍ଜ୍ୱଳ ସୂର୍ଯ୍ୟ, ଚନ୍ଦ୍ର, ତାରା,
ନୀଳ ସମୁଦ୍ର ଶ୍ୟାମ ଧରା ।
ପର୍ବତ, ନଦୀ, ତରୁମାନ,
ସୃଜିଲେ ପ୍ରଭୁ ଭଗବାନ ।

ନାନାବର୍ଣ୍ଣର ଫୁଲ ଫଳ,
ବୃକ୍ଷର ପଲ୍ଲବ କୋମଳ ।
ମନୁଷ୍ୟ, ପଶୁ, ପକ୍ଷୀ ଆଦି,
ସକଳ ସୃଜିଲେ ଅନାଦି ।
ତାହାଙ୍କ ଆଜ୍ଞାରେ ପବନ,
ସର୍ବତ୍ର କରେ ବିଚରଣ ।
ଅଗ୍ନି ତାଙ୍କର ଆଦେଶରେ,
ଉତ୍ତାପ, ତେଜ ଦାନ କରେ
ଈଶ୍ୱର ଦୟାର ସାଗର,
ତାଙ୍କର ମହିମା ସ୍ମର ।

## ପରମେଶ୍ୱର ।

ଯାହା ମୁଁ କରଇ ଯାହା ମୁଁ କହଇ,
ଯାହା ମୁଁ ଚିନ୍ତଇ ମନେ ।
ଜଗତର କର୍ତ୍ତା ପରମ-ଈଶ୍ୱର
ଜାଣୁଛନ୍ତି ପ୍ରତିକ୍ଷଣେ ।
ମୋ ପାଶେ ଅଛନ୍ତି ଦିବସ ରଜନୀ
ମହାପ୍ରଭୁ ପରାତ୍ପର ।
ଏ କଥା ସୁମରି ହୃଦୟେ ତାହାଙ୍କୁ
ପୂଜିବି ମୁଁ ନିରନ୍ତର ।

## ସ୍ତବ ।

କି ସୁନ୍ଦର ଅହା କି ଆନନ୍ଦମୟ
ଏହି ବିଶାଳ ସଂସାର ।

ଧନ୍ୟ ମହାପ୍ରଭୁ ମହିମା ତୁମ୍ଭର
ଅଟେ ଅନନ୍ତ ଅପାର ।
ସୂର୍ଯ୍ୟ ଚନ୍ଦ୍ର ତାରା ତୁମ୍ଭର ଆଜ୍ଞାରେ
ବରଷନ୍ତି ଜ୍ୟୋତିରାଶି ।
ତୁମ୍ଭର କୁସୁମ ପ୍ରତି ପ୍ରଭାତରେ
ହସଇ ଆନନ୍ଦେ ଭାସି ।
ପିତା ମାତା ବନ୍ଧୁ ଭାଇ ଭଗିନୀର
ହୃଦୟେ ଦେଇଛ ପ୍ରୀତି ।
ତେଣୁ ମୁଁ ସଂସାରେ ରହିଛି ଆନନ୍ଦେ
ସୁଖ ଭୁଞ୍ଜି ନିତି ନିତି ।
ଦିଅ ଭକ୍ତି ପ୍ରଭୁ ହୃଦୟେ ମୋହର
ବିରାଜ ନିତ୍ୟ ତହିଁରେ ।
ସତ୍ୟପଥେ ରହି ତୁମ୍ଭର ଆଶ୍ରାରେ
ଯାଉ ମୋ ଦିନ ମହୀରେ ।

—୦:୦:୦—

## ପ୍ରଭାତ ।

ପାହିଲା ଅନ୍ଧାର ରଜନୀ ଉଠ ଉଠ ବାଳକେ,
ନବୀନ ପ୍ରଭାତ ସମୟେ ଏବେ ଗାଅ ପୁଲକେ ।
ଦଶଦିଗ ଦେଖ ଉଜ୍ଜ୍ୱଳ ପାଇ ରବିକିରଣ,
ଫୁଲ ଫୁଟିଅଛି କାନନେ ଧୀରେ ବହେ ପବନ ।
ଥିଲେ ଅଚେତନ ନିଦ୍ରାରେ ସର୍ବେ ଧରଣୀବାସୀ,
କି ମନ୍ତ୍ର ପଢିଲା ପ୍ରଭାତ କେଉଁ ଦେଶରୁ ଆସି ।

ନବପ୍ରାଣ ଲଭି କ୍ଷଣକେ ଜାଗି ଉଠିଲେ ସବେ ,
ଆକାଶ ପୃଥିବୀ ପୂରିଲା ମହା ଆନନ୍ଦରବେ ।
ବିହଙ୍ଗେ ଗାଇଲେ ସଙ୍ଗୀତ ଅହା କି ମନୋହର ,
ସେ ଗୀତ ଶ୍ରବଣେ ହୃଦୟ ନାଚି ଉଠେ ମୋହର ।
ବିହଙ୍ଗ ସଙ୍ଗୀତେ ବାଳକେ ଗାଅ ଆନନ୍ଦ ମନେ ,
ହୃଦୟେ ସୁମର ଜଗତ-ପିତା ସୃଷ୍ଟିକାରଣେ ।

## ସନ୍ଧ୍ୟା ।

ପଶ୍ଚିମ ଦିଗରେ ବୁଡ଼ଇ ରବି ,
ଅହା କି ସୁନ୍ଦର ଲୋହିତ ଛବି ।
ପଶ୍ଚିମ ଆକାଶ ସିନ୍ଦୂରମୟ ,
ଦେଖିଲେ ପ୍ରଫୁଲ୍ଲ ହୁଏ ହୃଦୟ ।
କ୍ରମେ ଅନ୍ଧକାର ଆସଇ ଘୋଟି ,
ଉଇଁଲେଣି ତାରା ଗୋଟିକି ଗୋଟି ।
ଚରା ସାରି ପକ୍ଷୀ ଆକାଶେ ଉଡ଼ି ,
ବସାକୁ ଆନନ୍ଦେ ଗଲେ ବାହୁଡ଼ି ।
ହଳକାମ ସାରି କୃଷକମାନେ ,
ଫେରି ଯାଉଛନ୍ତି ନିଜ ବସାନେ ।
ବାଳକେ ଆସିଲେ ପାଠଶାଳାରୁ ,
ହସହସ ମୁଖ ଦିଶେ ସୁନ୍ଦରୁ ।
ଲଗାଇଲେ ସଞ୍ଜଦୀପ ଘରଣୀ ,
ଅନ୍ଧକାରେ ବୁଡିଗଲା ଧରଣୀ ।

ସମାପ୍ତ ।

